# ହେତୁବାଦୀ ରହସ୍ୟ



ବାଲ୍ମୀକି ନାୟକ

ଏଥିରେ ପାଇବେ :
ସତୀଙ୍କ ନାମରେ ଶକ୍ତିପୀଠମାନଙ୍କ ରହସ୍ୟ
ଆତ୍ମା ଏକ ତଥ୍ୟ ନା କେବଳ ତର୍କ ?
ଭକ୍ତର ଭଗବାନ : ଏକ ବିଶ୍ଳେଷଣ

# ହେତୁବାଦୀ ରହସ୍ୟ

(ହେତୁବାଦ ଆଧାରିତ ପ୍ରବଂଧ ସଂକଳନ)

*ଲେଖକ:*

***ବାଲ୍ମୀକି ନାୟକ***

ଫ୍ଲାଟ୍ ନଂ : ୧୦୧, ଡି.ଏସ.ମ୍ୟାକ୍ସ

ସିଗୁଲ ନେଷ୍ଟ,

ବାସବାନପୁର

ପୋ : ଭିରଗୋ ନଗର

ବେଙ୍ଗାଲୁରୁ - ୫୬୦୦୪୯

ମୋ : ୦୯୪୮୨୦୧୬୨୬୦

*ପ୍ରକାଶିକା :*

***ମମତା ନାୟକ***

ବେଙ୍ଗାଲୁରୁ



*ମୁଦ୍ରଣ :*

***ରଶ୍ମି ପ୍ରିଣ୍ଟର୍ସ***

ଏଫ୍. ଏମ୍.-୯୬ ଓ ୧୩୨

ନୂଆ ବସ୍‌ଷ୍ଟାଣ୍ଡ, ରାଉରକେଲା - ୧

ମୋ : ୯୪୩୮୪୬୬୯୦୭

*ପ୍ରଥମ ପ୍ରକାଶନ : - ୨୦୧୭*

ମୂଲ୍ୟ : ୮୦/-

# HETUBADI RAHASYA

(Based on Rationalism)

***Author :***

**Balmiki Nayak**

Flat No. - 101, D.S Max

Seagullnest,

At- Basavanapura

PO - Virgonagar

Bengaluru - 560049

Mob. : 09482016260

***Publisher :***

**Mamata Nayak**

Bengaluru



***Printer :***

**Rashmi Printers,**

FM - 96 & 132, New Bus Stand,

Rourkela - 769001

Mob. : 9438466907

***First Edition : - 2017***

**Price : 80/-**

email : balmikinayak@gmail.com

# ସୂଚୀପତ୍ର



*******

***ବାଲ୍ମୀକି ନାୟକଙ୍କର............***

ନିମ୍ନରେ ପ୍ରଦତ୍ତ ହେତୁବାଦ ଆଧାରିତ ପାଞ୍ଚ ଗୋଟି ପ୍ରବଂଧ ସଂକଳନ, ନ ପଢିଥିଲେ ପଢନ୍ତୁ । ଭିତ୍ତିହୀନ ବିଶ୍ୱାସ ଦୂର ହେବ ଏବଂ ବୈଜ୍ଞାନିକ ଚିନ୍ତନ ବୃଦ୍ଧି ପାଇବ । ବହି ପାଇଁ ଲେଖକଙ୍କୁ ସିଧା ଯୋଗାଯୋଗ କରନ୍ତୁ । ଲାଭ କିମ୍ବା କ୍ଷତି ନ ଥାଇ ରିହାତି ମୂଲ୍ୟରେ ସେ ବହି ଯୋଗାଇ ଦେବେ ।

ଯୋଗାଯୋଗ ନମ୍ବର : + 91 9482016260, + 91 8088324778

---

## ମୁକ୍ତ ମନର ବିଚାର

(୩୫ ଗୋଟି ପ୍ରବଂଧ) ମୂଲ୍ୟ : ୧୬୦/- ଟଙ୍କା

***ଏଥିରେ ପାଇବେ :-*** ଅଙ୍କ ଜ୍ୟୋତିଷ : କେତେ ସତ ?, ଭଗବାନ ବନାମ ମାନବ, ଭୟରୁ ଜାତ ହୁଏ ଅମୂଳକ ବିଶ୍ୱାସ

---

## ଚମତ୍କାର ରହସ୍ୟ

ଦ୍ୱିତୀୟ ସଂସ୍କରଣ (୨୦ ଗୋଟି ପ୍ରବଂଧ) ମୂଲ୍ୟ : ୯୦/- ଟଙ୍କା

***ଏଥିରେ ପାଇବେ :-*** ଗରିବ ଦେଶର ଧନୀ ଭଗବାନ, ହାଇଟେକ ପୂଜା ପଦ୍ଧତି ଓ ଧନୀ ଭକ୍ତ, ଧାର୍ମିକ ମେଳା ଓ ପର୍ବ ବେଳେ ବିପଦ

---

## ତର୍କର ଊର୍ଦ୍ଧ୍ୱରେ କିଏ ?

ଦ୍ୱିତୀୟ ସଂସ୍କରଣ (୧୪ ଗୋଟି ପ୍ରବଂଧ) ମୂଲ୍ୟ : ୭୦/- ଟଙ୍କା

***ଏଥିରେ ପାଇବେ :-*** ଆତ୍ମାର ବୈଜ୍ଞାନିକ ବିଶ୍ଳେଷଣ, ପିଣ୍ଡଦାନ କାହା ପାଇଁ, ଧର୍ମ ସହିତ ବିଜ୍ଞାନର ସଂଘର୍ଷ

---

## ହେତୁବାଦର ଆବଶ୍ୟକତା

(୨୦ ଗୋଟି ପ୍ରବଂଧ) ମୂଲ୍ୟ : ୮୦/- ଟଙ୍କା

***ଏଥିରେ ପାଇବେ :-*** ଯମପୁର ଏକ ପ୍ରହେଳିକା, ମିଥ୍ୟାପୂଜା କାହିଁକି ?, ମୁହୂର୍ତ୍ତ ଗଣନାର ଚକ୍ରବ୍ୟୂହ

---

## ଅଦ୍ଭୁତ ଜନବିଶ୍ୱାସ

(୨୦ ଗୋଟି ପ୍ରବଂଧ) ମୂଲ୍ୟ : ୯୦/- ଟଙ୍କା

***ଏଥିରେ ପାଇବେ :-*** ବିଜ୍ଞାନ ଦୃଷ୍ଟିରେ ପୁନର୍ଜନ୍ମ, ବାବାଙ୍କ ମାୟାଜାଲରେ ମହିଳା ଭକ୍ତ, ଭଗବାନଙ୍କ ସୁରକ୍ଷାର ପ୍ରଶ୍ନ

# ସଂସ୍କୃତିର ପରିଭାଷା

ଦୁନିଆରେ ମାନବ ବିକାଶ ଲାଭ କରିବା ପରେ ସମାଜ ଗଠନ ହେବା ସହିତ ସାମାଜିକ ନୀତି ଓ ନିୟମ ବି ତିଆରି ହେଲା । ସମାଜର ଜନ ସାଧାରଣଙ୍କୁ ନିୟନ୍ତ୍ରଣ କରିବା ପାଇଁ ଓ ଶୃଙ୍ଖଳା ରକ୍ଷା ପାଇଁ ଅନେକ ପ୍ରକାର ନୀତି ଓ ନିୟମ ଆବଶ୍ୟକ ଥିଲା । ଧିରେ ଧିରେ ନୀତି ଓ ନିୟମର ଶୃଙ୍ଖଳା ଭିତ୍ତିରେ ସମାଜରେ ସଂସ୍କାର ଆସିଲା । ବ୍ୟକ୍ତିଗତ ଜୀବନର ବିକାଶଠାରୁ ଆରମ୍ଭକରି ପରିବାର ଓ ସମାଜର ମଙ୍ଗଳ ସାଧନ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତରରେ ସଂସ୍କାରକୁ ବାଧ୍ୟତା ମୂଳକ ଭାବେ ପାଳନ କରାଗଲା । ଯେ କେହି ସମାଜ ନିର୍ଦ୍ଧାରିତ ସଂସ୍କାରକୁ ଅବଜ୍ଞା କରିବ ତା' ପାଇଁ କଠୋର ଦଣ୍ଡ ବିଧାନ ବି ରହିଲା । ସଂସ୍କାରକୁ ମାନି ଚଳିବା ନୀତିକୁ ସଂସ୍କୃତି ରୂପେ ମାନ୍ୟତା ମିଳିଲା ।

ସଂସ୍କାରକୁ ଆମେ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରି ପାରିବା । ଗୋଟିଏ ହେଉଛି, ଭୌତିକ ଜଗତର ସଂସ୍କାର । ଏହି ସଂସ୍କାର ଭିତରେ ମଣିଷର ସମସ୍ତ ଭଲ ମାନବୀୟ ଗୁଣ ଯଥା: ଦୟା, କ୍ଷମା, ତ୍ୟାଗ, ପରୋପକାର, ସଂବେଦନଶୀଳ, ସହନଶୀଳ ଓ ପ୍ରେମ ରହିବା ଉଚିତ । ଦ୍ୱିତୀୟଟି ହେଉଛି, ଅଧିଭୌତିକ ବା ଆଧ୍ୟାତ୍ମିକ ସଂସ୍କାର । ଏହା ଭିତରେ ବିଶ୍ୱକୁ ସୃଷ୍ଟି କରିଥିବା (?) ତଥାକଥିତ ଈଶ୍ୱରଙ୍କ ପ୍ରତି ଗଭୀର ଆସ୍ଥା ଓ ଆଦିମ କାଳରୁ ରଚନା କରାଯାଇଥିବା ଧର୍ମଶାସ୍ତ୍ର ଉପରେ ଅତୁଟ ବିଶ୍ୱାସ ରଖି ପୂଜା, ପ୍ରାର୍ଥନା, ଯଜ୍ଞ ଆଦି ଧର୍ମୀୟ କର୍ମକାଣ୍ଡ କରିବା ।

ମଣିଷର ପ୍ରକୃତି ଭିତରେ ଉତ୍ତମ ଗୁଣ ସହିତ ଅନେକ ବଦ୍‌ଗୁଣ ଯଥା : ଈର୍ଷା, ଦ୍ୱେଷ, ଘୃଣା, ହିଂସା, ଲୋଭ, ମୋହ ଆଦି ଭରି ରହୁଥିବାରୁ ଭୌତିକ ସଂସ୍କାର କଳୁଷିତ ହୋଇ ପଡୁଛି । ସମାଜର ଦଣ୍ଡ ବ୍ୟବସ୍ଥା ଯେତେ କଠୋର ହେଲେ ବି ସମାଜରେ ବିଭିନ୍ନ ପ୍ରକାର ଅନ୍ୟାୟ, ଅତ୍ୟାଚାର, ଶୋଷଣ ହତ୍ୟା

ଓ ନାରୀଧର୍ଷଣ ଭଳି ଅନେକ ଦୋଷ ଦେଖା ଯାଉଛି । ସେଥିପାଇଁ ମାନସିକ ସ୍ତରରେ ଭୟ ସୃଷ୍ଟିକରି ଦୁଷ୍ଟ ପ୍ରକୃତିର ମଣିଷମାନଙ୍କୁ ନିୟନ୍ତ୍ରଣ କରିବା ପାଇଁ ଆଧ୍ୟାତ୍ମିକ ସଂସ୍କାର ଏକ ସଫଳ ଉପାୟ ବୋଲି ପୁରୁଣା କାଳର ସମାଜ ସୁଧାରକ ମାନେ ଚିନ୍ତା କରିଥିଲେ । ସେଥିରେ ପାପ ପୁଣ୍ୟ କର୍ମ ଅନୁସାରେ ନର୍କ କିମ୍ବା ସ୍ୱର୍ଗ ଭୋଗ କରିବା ତଥ୍ୟକୁ ବିଭିନ୍ନ କାହାଣୀ ମାଧ୍ୟମରେ ପ୍ରଚାର କରିଥିଲେ । ପରବର୍ତ୍ତି କାଳରେ ସେହି ସବୁ କାଳ୍ପନିକ ଚରିତ୍ର ଓ କାହାଣୀ ଜନମାନସକୁ ପ୍ରଭାବିତ କରି ରଖିଛି । ଆଧ୍ୟାତ୍ମିକ ସଂସ୍କୃତି ନାମରେ ଆଜିର ଆଧୁନିକ ଓ ବିଜ୍ଞାନ ଯୁଗରେ ବି "ଲକିର କେ ଫକୀର" ନିତୀରେ ପୁରୁଣା ପୁରୁଣା ପର୍ବପର୍ବାଣୀକୁ କୌଣସି ବିଶେଷ ପରିବର୍ତ୍ତନ ନକରି ଆମେ ପାଳନ କରି ଆସିଛୁ । ଯେଉଁ ଗଣପର୍ବଗୁଡିକ ଆଗରୁ କେବଳ ଗାଁ ଗହଳର ଗରିବ ଓ ଅଶିକ୍ଷିତ ଲୋକମାନେ ହିଁ ପାଳନ କରୁଥିଲେ ସହରରେ ବାସ କରୁଥିବା ଧନୀ ଓ ଶିକ୍ଷିତ ଲୋକମାନେ ମଧ୍ୟ ସେହି ସବୁ ଗଣପର୍ବକୁ ପରଂପରା ନାମରେ ପାଳନ କରିବାକୁ ଚେଷ୍ଟା କରୁଛନ୍ତି । ପୂର୍ବ କାଳର ଗଣ ପର୍ବରେ ବୈଜ୍ଞାନିକ କାରଣ କଅଣ ଅଛି ? ଆଜିର ଯୁଗରେ ସେଗୁଡିକ ପାଳନ କରିବା କେତେ ଆବଶ୍ୟକତା ? ସେଗୁଡିକ ପାଳନ ନ କଲେ ଆମର କଅଣ କ୍ଷତି ହେବ ? ସେ ସଂପର୍କରେ ଚିନ୍ତା କରିବା ବା ପ୍ରଶ୍ନ କରିବାକୁ କେହି ସାହସ କରିପାରୁ ନାହାନ୍ତି ।

ଓଡିଶାର ଏକ ପାରଂପାରିକ ଗଣ ପୂଜା ହେଉଛି କାର୍ତ୍ତିକ ମାସର 'ବୋଇତ ଭସାଣୀ' ପର୍ବ । କାର୍ତ୍ତିକ ମାସକୁ ଏକ ଧର୍ମମାସ ବୋଲି କହନ୍ତି । ଏହି ମାସରେ ଆହୁରି ଅନେକ ପ୍ରକାର ଧର୍ମିୟ କର୍ମକାଣ୍ଡ କରାଯାଏ । ପ୍ରଶ୍ନ ଉଠୁଛି । କେବଳ କାର୍ତ୍ତିକ ମାସଟି ଯଦି ଧର୍ମମାସ, ତେବେ ଅନ୍ୟ ଏଗାରଟି ମାସ କଅଣ ଅଧର୍ମ ମାସ ? ମହାଦେବ ଦାସଙ୍କ ରଚିତ 'କାର୍ତ୍ତିକ ମହାତ୍ମ' କହୁଛି-

"କାର୍ତ୍ତିକ ମହିମା ଯେ ଶୁଣି ଶ୍ରବଣେ ସର୍ବ ଧର୍ମ କିଣି ।
ହୃଦେ ରଖିବ ଯତ୍ନ କରି , ଅଶେଷ ଜନ୍ମ ପାପ ହରି ।
ବଢଇ ଆୟୁଯଶ ଧର୍ମ, ଶିରୀ ସଂପଦ ଶୁଭକର୍ମ ।
ବିଶେଷ ହୁଏ ଧର୍ମ ମନ, ଉତ୍ତମ ଜ୍ଞାନ ଧନ ଜନ ।
ଅବଶ୍ୟ ଲଭଇ ଏତେକ, କେବେ ହେଁ ନ ଲାଗେ ପାତକ ।
ନଳିନୀ ଜଳେ ଯେହ୍ନେ ଆପ, ପଦ୍ମପୁରାଣେ ତେହ୍ନେ ପାପ ।
ଶରୀର ନ ପାଇଲ ପୀଡି, ଶ୍ରବଣ ମାତ୍ରେ ଯାଏ ଛାଡି" ।

ପ୍ରଶ୍ନ ଉଠୁଛି । ଏଗାର ମାସରେ ମଣିଷ କରିଥିବା ପାପ ବା ଅପକର୍ମର ଦୋଷ କଅଣ ଏହି ପୁରାଣ ଶ୍ରବଣ କରି କାର୍ତ୍ତିକ ମାସରେ ପୂଜା, ପାଠ କଲେ କ୍ଷୟ ହୋଇଯିବ ?

ଆଉ କେତୋଟି ମଜା କଥା ହେଉଛି- ଭାରତର ପ୍ରତ୍ୟେକ ପ୍ରଦେଶରେ ହିନ୍ଦୁମାନେ ବାସ କରୁଥିଲେ ବି ଉତ୍ତର ଭାରତୀୟମାନେ ପୂର୍ଣ୍ଣମୀଠାରୁ ଆସନ୍ତା ପୂର୍ଣ୍ଣମୀ ପର୍ଯ୍ୟନ୍ତ ଏକ ମାସ ଗଣନା କରୁଛନ୍ତି, ଅଥଚ ଦକ୍ଷିଣ ଭାରତୀୟ ମାନେ ଅମାବାସ୍ୟାଠାରୁ ଆସନ୍ତା ଅମାବାସ୍ୟା ପର୍ଯ୍ୟନ୍ତ ଏକ ମାସ ଗଣନା କରୁଛନ୍ତି ।

ଅର୍ଥାତ କାର୍ତ୍ତିକ ମାସଟି ପନ୍ଦର ଦିନିଆ ନା ପଇଁଚାଳିଶ ଦିନିଆ ମାନି ଆମେ ପୂଜା, ବ୍ରତ ଆଦି କରିବା ? ଓଡିଶାରେ ଗୁରୁବାରଟି ଲକ୍ଷ୍ମୀ ବାର ବୋଲି ମାନନ୍ତି । ଅଥଚ କର୍ଣ୍ଣାଟକରେ ଶୁକ୍ରବାରଟି ଲକ୍ଷ୍ମୀବାର ବୋଲି ମାନନ୍ତି । ପ୍ରଶ୍ନ ଉଠୁଛି- ଓଡିଶାରେ ଜନ୍ମଗ୍ରହଣ କରି ବଡ ହୋଇଥିବା ଓଡିଆ ବୋହୂଟିଏ କର୍ଣ୍ଣାଟକରେ ଆସି ରହିଲେ, ସେ କେଉଁ ବାରଟିକୁ 'ଲକ୍ଷ୍ମୀବାର' ବୋଲି ମାନିବ ? ଯଦି ଗୁରୁବାରକୁ ମାନିବ ଓ ଶୁକ୍ରବାରକୁ ମାନିବ ନାହିଁ, ତେବେ ଏଠିକା ମହାଲକ୍ଷ୍ମୀ କଅଣ ତାକୁ କ୍ଷମା କରିଦେବେ ? ମାନସିକ ଦ୍ୱନ୍ଦ୍ୱ ଓ ଧର୍ମଭୟ ଦୃଷ୍ଟିରୁ ସେ ହୁଏତ ଦୁଇଟି ବାରକୁ ମାନିବ ।

ବର୍ତ୍ତମାନ ଆମେ ବାସ୍ତବିକ, ଚଳନ୍ତି ଆଧୁନିକ ସମାଜର ଚିତ୍ର ଦେଖିବା । ଯେଉଁ ସ୍ତ୍ରୀମାନେ ଉଚ୍ଚଶିକ୍ଷା ପ୍ରାପ୍ତ କରି ନିଜର ମାତୃଭୂମିରୁ ଦୂରରେ ଥିବା ସହରମାନଙ୍କରେ ଚାକିରୀ କରୁଛନ୍ତି, ସେମାନେ ଓଡିଆ ଘରର ସାଧାରଣ ଶିଷ୍ଟାଚାର, ସଣ୍ଢଣା ଓ କର୍ତ୍ତବ୍ୟବୋଧକୁ ପ୍ରାୟ ପାଶୋରି ଦେଲେଣି । ଶାଢୀ ପିନ୍ଧିବା ତ ଦୂରର କଥା, ହାତରେ ଶଂଖା, ମଥାରେ ସିନ୍ଦୂର ପିନ୍ଧିବାକୁ ବି ଅପସଂଦ କଲେଣି । ଆଧୁନିକ ପରିପାଟୀକୁ ମୁକ୍ତ ମନରେ ସ୍ୱୀକାର କରି ସାରିଲେଣି । ଏହାର ଅର୍ଥ ନୁହେଁ ଯେ ସେମାନେ କିଛିଖରାପ କରୁଛନ୍ତି । ସମୟ ଓ ପରିବେଶ ସହିତ ନିଜକୁ ଖାପ ଖୁଆଇ ସହଜ ଭାବେ ଜୀବନଶୈଳୀରେ ପରିବର୍ତ୍ତନ ଆଣିବା ଖରାପ କଥା ନୁହେଁ । କିନ୍ତୁ ସେମାନେ ଓଡିଶାର ଆଧ୍ୟାତ୍ମିକ ସଂସ୍କୃତି ନାମରେ ଗଣପର୍ବ ପାଳନ କରିବାକୁ ବେଶି ଉତ୍ସାହିତ ହେଉଥିବା ଦେଖି ମନରେ ପ୍ରଶ୍ନ ଉଠୁଛି- ଏମିତି ଆତ୍ମପ୍ରବଞ୍ଚନା କହିଁକି ?

ଗଣପର୍ବ ଓଡିଶାର ଗାଁ ଗହଳ ଲୋକମାନଙ୍କ ପାଇଁ ଏକ ମନୋରଂଜନର ମାଧ୍ୟମ ଥିଲା । ସମସ୍ତେ ଏକାଠି ହୋଇ ନାଚି, ଗାଇ, ହସଖୁସିରେ ବଂଧୁ ମିଳନର ଆନନ୍ଦ ଉପଭୋଗ କରୁଥିଲେ । ଗାଁରୁ ଆସି ସହରରେ ସମସ୍ତ ଭୌତିକ ସାଧନ ବ୍ୟବହାର କରୁଥିବା ଆଧୁନିକ ଲୋକମାନେ କେବେ ତାଙ୍କର ପିଲାମାନଙ୍କର ବର୍ଥଡେ (ଜନ୍ମଦିନ) ପାଳନ କରିବାକୁ ଗାଁକୁ ଯାଇ କେକ୍‌କାଟି ବଂଧୁ ପରିଜନଙ୍କ ସହ ଖୁସି ବାଣ୍ଟୁଛନ୍ତି କି ? ନୁହେଁ । କାରଣ ଏହା ହେଉଛି ସହରର ସଂସ୍କୃତି । ସେହିଭଳି ଗାଁ ଗହଳର ପର୍ବକୁ ସହରକୁ ଟାଣି ଆଣି ପାଳନ କରିବା ଦ୍ୱାରା ସେହି ପର୍ବର ମହତ୍ତ୍ୱ ନଷ୍ଟ ହୋଇଯାଉଛି ।

ଓଡିଆ ସଂସ୍କୃତିର ଏକ ଅବକ୍ଷୟ ମୂଲ୍ୟ ସଂପର୍କରେ ମୋର ବ୍ୟକ୍ତିଗତ ଅନୁଭବ ଏଇଠି ଉଲ୍ଲେଖ କରିବା ଉଚିତ ଭାବୁଛି । ବାଂଗାଲୋର ସହରରେ

ଅନେକ ଓଡିଆ ଆସି ଚାକିରୀ କିମ୍ବା ବ୍ୟବସାୟ୍ କରୁଛନ୍ତି । ମୁଁ ଜଣେ ଓଡିଆ ପ୍ରେମୀ । ଓଦିଆ ଭାଷା ପ୍ରତି ମୋର ଭୀଷଣ ଦୁର୍ବଳତା ରହିଛି । ରାସ୍ତା ବା ବଜାରରେ ଓଡ଼ିଆରେ କେହି କଥା ହେଉଥିବା ଶୁଣିଲେ ମୁଁ ଆଗୁଆ ହୋଇ ନମସ୍କାର କରି କହେ- ଆଜ୍ଞା ଆପଣ ଓଡ଼ିଆ ? ଥରେ ଜଣେ ଭଦ୍ର ବ୍ୟକ୍ତି ମୋତେ ସଂଦେହ ଦୃଷ୍ଟିରେ ଚାହିଁ ମୋ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ- ହଁ, ତ କଅଣ ହେଲା ସେଇଠୁ ? ତାଙ୍କର ପ୍ରତିପ୍ରଶ୍ନ ଶୁଣି ମୁଁ କଅଣ ଆଉ ଉତ୍ତର ଦେଇଥାନ୍ତି ? ଆହୁରି ଅନେକ ଲୋକମାନଙ୍କ ଠାରୁ ଅନେକ ପ୍ରକାର ଉତ୍ତର ପାଇଛି ଯାହା ପ୍ରମାଣ କରୁଛି ଯେ 'ଆମେ ଆଉ ସେହି ଦରିଦ୍ର ଓ ପଛୁଆ ପ୍ରଦେଶର ଲୋକ ନୁହେଁ । ଆମର ସଭ୍ୟତା ଓ ସଂସ୍କୃତି ବେଶ ମାର୍ଜିତ ଓ ଆଧୁନିକ' । ଓଡିଆ ଭାଷାରେ ପାଠପଢା ଆରମ୍ଭ କରି ଇଂରାଜୀ ଭାଷାରେ ଉଚ୍ଚଶିକ୍ଷା ପର୍ଯ୍ୟନ୍ତ ଡିଗ୍ରୀ ହାସଲ କରିଥିବା ଓଡିଆ ଯୁବକ, ଯୁବତୀ ଆଜି ଓଡିଆ ବହି ବା ପତ୍ରିକା ଖଣ୍ଡେ ପଢିବାକୁ ନାକ ଟେକୁଛନ୍ତି । ବେଳେବେଳେ ମୁଁ ଦେଖି ଆଶ୍ଚର୍ଯ୍ୟ ହୁଏ ଯେ ଦୁଇଜଣ ଓଡିଆ ଲୋକ ହିନ୍ଦି କିମ୍ବା ଇଂରାଜୀରେ କଥାବାର୍ତ୍ତା ହୁଅନ୍ତି । ଏହାର କାରଣ ପଚାରିଲେ ନିର୍ଲ୍ଲଜ ଭାବେ ଉତ୍ତର ଦିଅନ୍ତି- 'ବାହାରେ ରହି ରହି ଅଭ୍ୟାସ ହୋଇ ଗଲାଣି । ଓଡିଆରେ ଆମେ ଠିକ୍ ଭାବେ ଭାବ ବ୍ୟକ୍ତ କରି ପାରୁନାହୁଁ । ଏହାକୁ ଆପଣ କେଉଁ ସଂସ୍କୃତି ବୋଲି କହିବେ ?

ଯେଉଁ ସମୟରେ ଯାତାୟତ କରିବା ପାଇଁ ସାଧନ ସିମୀତ ଥିଲ । ସେହି ସମୟରେ ସାହସୀ ଓଡ଼ିଆ ସାଧବ ପୁଅମାନେ ନିଜର ଉତ୍ପାଦିତ ବସ୍ତୁଗୁଡିକୁ ବୋଇତ ସାହାଯ୍ୟରେ ନେଇ ଦୂରରେ ଥିବା ସିଂହଳ, ଜାଭା, ସୁମାତ୍ରା ଓ ବର୍ମା ଆଦି ଦେଶମାନଙ୍କୁ ମହାସମୁଦ୍ରରେ ଜୀବନର ବାଜି ଲଗେଇ ବ୍ୟବସାୟ୍ କରୁଥିଲା । ସେହିମାନଙ୍କ ସ୍ମୃତିରେ ଆମ ପ୍ରଦେଶର ଲୋକମାନେ

ପ୍ରବାହିତ ହେଉଥିବା ନଦୀ କିମ୍ବା ସମୁଦ୍ର ଜଳରେ କଦଳୀ ବାହୁଂଗାର ଡଂଗାରେ ଦୀପଜାଳି ପ୍ରବାହିତ କରୁଛନ୍ତି । ବର୍ତ୍ତମାନ ସହରର ସିମୀତ ଜଳରାଶି ଥିବା ଯେକୌଣସି ପୋଖରୀ କିମ୍ବା ଗାଡିଆରେ ଶହ ଶହ ସଂଖ୍ୟାରେ କଦଳୀ ବାହୁଂଗା ଭସେଇବା ଦ୍ୱାରା ପ୍ରଦୂଷଣ ବୃଦ୍ଧିପାଉଛି । 'ବୋଇତ ଭସାଣୀ' ପାଳନ ସମୟରେ ଗାଁର ସ୍ତ୍ରୀମାନେ ହୁଳହୁଳି ଦିଅନ୍ତି, ଯାହା ଶ୍ରୁତିକଟୁ ହେଲେବି ଏକ ଅଦ୍ଭୁତ ଅନୁଭୂତି ଦେଇଥାଏ । ଆଜି ସହରର ସ୍ତ୍ରୀମାନଙ୍କୁ ହୁଳହୁଳି ପକେଇବା ଆସୁନାହିଁ କିମ୍ବା ଏହା ଏକ ରଢିବାଦୀ ପରଂପରା ବୋଲି ଭାବୁଛନ୍ତି ।

ଶେଷରେ ଆମେ ଏତିକି କହିପାରିବା ଯେ ଓଡିଶାର ଅସଲ ସାମାଜିକ, କଳା, ଭାଷା ଓ ସେବା ଭାବ ସଂସ୍କୃତିକୁ ଭୁଲିଯାଇ କେବଳ ଆଧ୍ୟାତ୍ମିକ ସଂସ୍କୃତି ନାମରେ ସ୍ୱଳ୍ପ ସମୟ ପାଇଁ ପୂଜା, ପାଠ କରିଦେଲେ ଆମର ପ୍ରଗତି ହୋଇପାରିବ ନାହିଁ । ଗଭୀର ଅଧ୍ୟୟନ, କଠିନ ପରିଶ୍ରମ, ଓ ସତ୍‌ଚରିତ୍ର ଗଠନ ଦ୍ୱାରା ହିଁ ଆମର ବିକାଶ ହେବ ଏବଂ ପ୍ରକୃତ ସଂସ୍କୃତି ଯୁଗ ଯୁଗ ଧରି ବଞ୍ଚି ରହିବ ।

********

# ସତୀଙ୍କ ନାମରେ ଶକ୍ତିପୀଠ ମାନଙ୍କ ରହସ୍ୟ

ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ମହାଦେବ ଶିବଙ୍କ ପତ୍ନୀ ପାର୍ବତୀଙ୍କ ଅନେକ ନାମ ଉଲ୍ଲେଖ ଅଛି । ଦୁର୍ଗା, କାଳୀ ଓ ସତୀ ବି କୁହାଯାଏ । ସତୀଙ୍କ ନାମରେ ଭାରତ ଓ ସିଂହଳ ଦେଶରେ ଅନେକ ଶକ୍ତିପୀଠ ନିର୍ମାଣ କରାଯାଇଛି । ଶକ୍ତିପୀଠ ସମ୍ପର୍କରେ ବିଭିନ୍ନ ଗ୍ରନ୍ଥରେ ବିଭିନ୍ନ ପ୍ରକାର ମତ ରହିଛି । କେଉଁଠି ଲେଖାଅଛି ୧୦୮ ଗୋଟି ଶକ୍ତିପୀଠ, କେଉଁଠି ଲେଖା ଅଛି ୫୧ ଗୋଟି ଶକ୍ତିପୀଠ । ଆଦିଶଙ୍କରାଚାର୍ଯ୍ୟଙ୍କ ମତରେ ୧୮ ଗୋଟି ଶକ୍ତିପୀଠ ରହିଛି । ସମସ୍ତ ଶକ୍ତିପୀଠର ତାଲିକା ବି ରହିଛି । ଏଇଠି ତାଲିକା ଦେଲେ ପ୍ରବନ୍ଧଟି ଲମ୍ବା ହୋଇଯିବ । ଆମେ ଏହାର ଆବଶ୍ୟକତା ବି ଅନୁଭବ କରୁନାହୁଁ । ଶକ୍ତିପୀଠ ନିର୍ମାଣର ପ୍ରଚଳିତ କାହାଣୀ ନିମ୍ନମତେ ବର୍ଣ୍ଣନା କରାଯାଇଛି ।

ଦକ୍ଷପ୍ରଜାପତି ଗୋଟିଏ ଯଜ୍ଞ ଅନୁଷ୍ଠିତ କରିଥିଲେ । ସେ ତାଙ୍କର ଝିଅ ପାର୍ବତୀ ଓ ଜାମାତା ଶିବଙ୍କୁ ବାଦ ଦେଇ ଅନ୍ୟ ସମସ୍ତ ଝିଅ, ଜାମାତା ଓ ଦେବତାମାନଙ୍କୁ ଯଜ୍ଞରେ ଯୋଗଦେବା ପାଇଁ ନିମନ୍ତ୍ରଣ କରିଥିଲେ । ପାର୍ବତୀ ନାରଦଙ୍କଠାରୁ ଏହି ଖବର ପାଇ ଆଶ୍ଚର୍ଯ୍ୟ ହୋଇଥିଲେ । ଏହାର କାରଣ ଜାଣିବା ପାଇଁ ସେ ବାପଘରକୁ ଯିବାକୁ ଶିବଙ୍କ ଅନୁମତି ଲୋଡିଥିଲେ । ଶିବ କହିଲେ ବିନା ନିମନ୍ତ୍ରଣରେ ଯିବା ଉଚିତ ନୁହେଁ । ପାର୍ବତୀ କିନ୍ତୁ ମନା ନମାନି ବାପଘରକୁ ଯାଇଥିଲେ । ପାର୍ବତୀଙ୍କୁ ଦେଖି ଦକ୍ଷ ପ୍ରଜାପତି ଆଦର ସମ୍ମାନ ବଦଳରେ ଶିବ ଓ ପାର୍ବତୀଙ୍କୁ ଅପମାନ ସୂଚକବାଣୀ ଶୁଣେଇଥିଲେ । ଅପମାନ ସହ୍ୟ କରିନପାରି ଦେବୀ ପାର୍ବତୀ ଯଜ୍ଞକୁଣ୍ଡରେ ଝାସ ଦେଇଥିଲେ । ମହାଦେବ ଶିବ ଯୋଗ ବଳରେ ଏହା ଜାଣିପାରି କ୍ରୋଧ ସଂବରଣ କରିପାରିଲେ ନାହିଁ ।

ସେ ତୁରନ୍ତ ଯଜ୍ଞସ୍ଥଳରେ ଉପସ୍ଥିତ ହୋଇ ଦେବୀଙ୍କ ଅର୍ଦ୍ଧଦଗ୍‌ଧ ଶରୀରକୁ ଯଜ୍ଞର ଅଗ୍ନିରୁ ଉଦ୍ଧାର କରି ନିଜ କାନ୍ଧରେ ରଖି ପ୍ରଚଣ୍ଡ ତାଳରେ ତାଣ୍ଡବ ନୃତ୍ୟ ଆରମ୍ଭ କରିଦେଲେ । ତାଙ୍କର ତାଣ୍ଡବ ନୃତ୍ୟରେ ବ୍ରହ୍ମାଣ୍ଡ ଥରହର ହୋଇପଡିଲା । ଦେବତାମାନେ ପ୍ରମାଦ ଗଣି, ବିଷ୍ଣୁଙ୍କୁ ଏହାର ସମାଧାନ କରିବାକୁ ଅନୁରୋଧ କଲେ । ବିଷ୍ଣୁ ତୁରନ୍ତ ନିଜର ସୁଦର୍ଶନ ଚକ୍ର ଦ୍ୱାରା ଶିବଙ୍କ କାନ୍ଧରେ ଥିବା ପାର୍ବତୀଙ୍କ ଶରୀରକୁ ଖଣ୍ଡ ଖଣ୍ଡ କରି କାଟି ପକେଇଲେ । ଶିବ ତାଣ୍ଡବ ନୃତ୍ୟକରି ବ୍ରହ୍ମାଣ୍ଡ ସାରା ଘୁରୁଥିବାରୁ ପାର୍ବତୀଙ୍କ ଶରୀରର ଖଣ୍ଡ ଗୁଡିକ ବିଭିନ୍ନ ସ୍ଥାନରେ ପଡିଲା । କୁହାଯାଏ ଯେଉଁଠି ତାଙ୍କ ଶରୀରର ଅଙ୍ଗ ପଡିଲା ସେଇଠି ଶକ୍ତିପୀଠ ନିର୍ମାଣ କରାଗଲା । ଦେବୀଙ୍କ ଶରୀର କେତେ ଖଣ୍ଡ ହୋଇଥିଲା ? ସେ କଥା ଠିକ୍ ଭାବେ କେହି କହିନାହାନ୍ତି ।

ଆଦି ଶଙ୍କରାଚାର୍ଯ୍ୟଙ୍କ ୧୮ ଗୋଟି ଶକ୍ତିପୀଠର ତାଲିକାରେ ଓଡିଶାରେ ମାତ୍ର ଗୋଟିଏ ଅଛି । ଯାଜପୁରରେ ଦେବୀଙ୍କ 'ନାଭି' ପଡିଥିବାରୁ ବିରଜା ନାମରେ ଶକ୍ତିପୀଠ ନିର୍ମାଣ ହୋଇଛି । ଓଡିଶାରେ ପ୍ରଚଳିତ ଶିବ ପୁରାଣ ଅନୁସାରେ ବିଷ୍ଣୁ ପାର୍ବତୀଙ୍କ ଶରୀରକୁ ମାତ୍ର ଆଠ ଖଣ୍ଡ କରିଦେଇଥିଲେ । ସେହି ଆଠଖଣ୍ଡ କେବଳ ଓଡିଶାର ବିଭିନ୍ନ ସ୍ଥାନରେ ପଡିଥିଲା । ତେଣୁ ଓଡିଶାରେ ଆଠଗୋଟି ଶକ୍ତିପୀଠ ତିଆରି ହୋଇଛି । ଯଥା : ବାଣପୁରରେ ଭଗବତୀ, କାକଟପୁରରେ ମଙ୍ଗଳା, ଝଙ୍କଡରେ ଶାରଳା, ପୁରୀରେ ବିମଳା, ଯାଜପୁରରେ ବିରଜା, ବାଙ୍କୀରେ ଚର୍ଚ୍ଚିକା, ତାଳଚେରରେ ହିଙ୍ଗୁଳା ଓ ସମ୍ବଲପୁରରେ ସମଲେଇ ।

ଅନ୍ୟ କିଛି ପୁରାଣ ଦେବୀ ଭାଗତ ଓ କାଳିକା ପୁରାଣ ଅନୁସାରେ ଭାରତରେ ମାତ୍ର ଚାରିଗୋଟି ଶକ୍ତିପୀଠ ଅଛି । ୧- ପୁରୀରେ ଦେବୀଙ୍କ ପାଦ

ପଡିଥିବାରୁ ବିମଳା, ୨- ବ୍ରହ୍ମପୁରରେ ଦେବୀଙ୍କ ସ୍ତନ ପଡିଥିବାରୁ ତାରାତାରିଣୀ, ୩- ଆସାମରେ ଦେବୀଙ୍କ ଯୋନୀ ପଡିଥିବାରୁ କାମାଖ୍ୟା ଏବଂ ୪- କଲିକତାରେ ଦେବୀଙ୍କ ମୁଖ ପଡିଥିବାରୁ ଦକ୍ଷିଣ କାଳୀ ଶକ୍ତିପୀଠ ତିଆରି ହୋଇଛି।

ଉପରୋକ୍ତ ସମସ୍ତ ଶକ୍ତିପୀଠ ମଧ୍ୟରୁ ଆସାମ ପ୍ରଦେଶର ଗୌହାଟୀ ସହର ନିକଟରେ ଥିବା ନୀଳାଚଳ ପାହାଡ ସ୍ଥିତ କାମାଖ୍ୟା ଶକ୍ତିପୀଠ ଉପରେ ସାମାନ୍ୟ ଚର୍ଚ୍ଚା କରାଯାଉ। ଏଇଠି ସତୀଙ୍କ ଜରାୟୁ ଓ ଯୋନୀ ପଡିଯାଇଥିବା କଥା ଶାସ୍ତ୍ରରେ ଉଲ୍ଲେଖ ଅଛି। ଏହି ଶକ୍ତିପୀଠକୁ ତନ୍ତ୍ରପୀଠ ବି କୁହାଯାଏ। ଏହି ମନ୍ଦିରକୁ କୁଚବିହାର ରାଜା ନରନାରାୟଣ ୧୬୬୫ ମସିହାରେ ନିର୍ମାଣ କରିଥିଲେ। ଭାରତର ବିଭିନ୍ନ ପ୍ରଦେଶରୁ ତାନ୍ତ୍ରିକମାନେ ତନ୍ତ୍ର ମନ୍ତ୍ର ସାଧନ ପାଇଁ ଏହି ମନ୍ଦିରରେ ଭିଡ ଲଗେଇଥାନ୍ତି। କୁହାଯାଏ ଆଷାଢ ମାସରେ ଦେବୀଙ୍କ ଋତୁସ୍ରାବ ହୁଏ। ଏହି ସମୟରେ ପାହାଡ ନିକଟରେ ପ୍ରବାହିତ ବ୍ରହ୍ମପୁତ୍ର ନଦୀର କିଛି ଅଂଶ ପାଣି ଲାଲ ଦେଖାଯାଏ। କୁହାଯାଏ ଏହା ହେଉଛି ଦେବୀଙ୍କ ଯୋନୀରୁ ନିର୍ଗତ ହେଉଥିବା ରକ୍ତ। ଏହାର ପରୀକ୍ଷଣ କରି କେହି ବିଜ୍ଞାନ ସମ୍ମତ ତଥ୍ୟ ଦେଇନାହାନ୍ତି। କେତେକ ବୁଦ୍ଧିଜୀବୀ କୁହନ୍ତି ଭକ୍ତମାନଙ୍କୁ ପ୍ରଭାବିତ କରିବା ପାଇଁ ମନ୍ଦିରର ପୂଜକମାନେ ସିନ୍ଦୂର ଘୋଳ ଭକ୍ତମାନଙ୍କ ଅଗୋଚରରେ ପାଣିରେ ଡାଳି ଦିଅନ୍ତି। ଚତୁର୍ଥ ଦିନ କବାଟ ଖୋଲାଯାଏ। ଏହି ସମୟରେ ପଶୁ ଓ ପକ୍ଷୀଙ୍କ ବଳୀ ଦିଆଯାଏ। ପୂଜକମାନେ ଖଣ୍ଡ ଖଣ୍ଡ କନାକୁ ସେହି ରକ୍ତରେ ଭିଜେଇ ଭକ୍ତମାନଙ୍କୁ ବାଣ୍ଟି ଦିଅନ୍ତି। କୁହାଯାଏ ଏହି ରକ୍ତ ଦେବୀଙ୍କ ଶରୀରରୁ ନିର୍ଗତ ହୋଇଛି।

ମନ୍ଦିର ଭିତରେ କାମାଖ୍ୟା ଦେବୀଙ୍କ ମୂର୍ତ୍ତି ନାହିଁ । ଗର୍ଭଗୃହ ଭିତରେ ଯୋନୀ ଆକାରର ଏକ ପ୍ରସ୍ତର ଖୋଦିତ ସାଙ୍କେତିକ ଚିହ୍ନ ରହିଛି । ସେଥିରେ ଲାଲ ରଙ୍ଗରେ ସିନ୍ଦୁର ଲିପା ଯାଇଥାଏ । ମନ୍ଦିର ବେଢାରେ କିଛି ଦେବୀଙ୍କ ଅବତାର ମୂର୍ତ୍ତି ରହିଛି । ଯଥା : ଧୂମାବତୀ, ମାତଙ୍ଗୀ, ବାଗୋଲା, ତାରା, କମଳା, ଭୈରବୀ, ଛିନ୍ନମସ୍ତା, ଭୁବନେଶ୍ୱରୀ, ତ୍ରିପୁରା ସୁନ୍ଦରୀ ଇତ୍ୟାଦି ।

ପ୍ରତିଦିନ ହଜାର ହଜାର ନରନାରୀ ନିଜ ନିଜର ବିଶ୍ୱାସ ଆଧାରରରେ ମାନସିକ ପୂରଣ ପାଇଁ ପ୍ରତ୍ୟେକ ଶକ୍ତିପୀଠକୁ ପୂଜାର୍ଚ୍ଚନା ପାଇଁ ଦୌଡି ଯାଉଛନ୍ତି । ସେମାନଙ୍କ ଭିତରେ କେବଳ ଅଶିକ୍ଷିତ ନୁହନ୍ତି, ଶିକ୍ଷିତ ଓ ଉଚ୍ଚଶିକ୍ଷିତ ବର୍ଗ ବି ଯୋଗ ଦେଇଥାନ୍ତି । ଶକ୍ତିପୀଠ ମାନଙ୍କରେ ପୂଜାର୍ଚ୍ଚନା କରି ଏବଂ କାମାଖ୍ୟା ଦେବୀଙ୍କ ରକ୍ତଭିଜା କନା ଖଣ୍ଡିକ ନେଇ କିଏ କେଉଁଠି ରଖି ପୂଜା କରନ୍ତି, ସେ କଥା ସେହିମାନେ ହିଁ କହି ପାରିବେ । କିଏ କ'ଣ ପାଉଛନ୍ତି ? ସେ କଥା ବି ସେହିମାନେ ଜାଣନ୍ତି ।

ଏଇଠି କିଛି ହେତୁବାଦୀ ପ୍ରଶ୍ନର ତର୍କସଂଗତ ଉତ୍ତର ଯଦି ଭକ୍ତମାନେ ଦେଇପାରିବେ ତେବେ ଅନେକ ରହସ୍ୟର ପର୍ଦ୍ଦାଫାଶ ହୋଇପାରିବ । ୧- ପାର୍ବତୀଙ୍କ ଭଳି ଜଣେ ଶକ୍ତିଶାଳୀ ଦେବୀଙ୍କ ଶରୀରକୁ ଅଗ୍ନିଦେବତା ଦଗ୍ଧ କରିବାକୁ ସାହସ କଲେ କିପରି ?

୨- ମହାଦେବ ଶିବ ଓ ବିଷ୍ଣୁଙ୍କ ଭଳି ଦେବତା ପାର୍ବତୀଙ୍କୁ ଜୀବନଦାନ ନେଦେଇ ଏତେକାଣ୍ଡ କଲେ କାହିଁକି ?

୩- ଶିବ ସାରା ବ୍ରହ୍ମାଣ୍ଡରେ ଘୁରି ଘୁରି ତାଣ୍ଡବ ନୃତ୍ୟ କରିଥିବା ବେଳେ

ପାର୍ବତୀଙ୍କ ଶରୀର ଖଣ୍ଡ ସବୁ ଭାରତ ଦେଶରେ ହିଁ କାହିଁକି ପଡିଲା ? ୪- ପାର୍ବତୀଙ୍କ ଶରୀର କେତେ ଖଣ୍ଡ ହୋଇଥିଲା ସେ ସମ୍ପର୍କରେ ଏକ ମତ ପ୍ରକାଶ ପାଇନାହିଁ କାହିଁକି ? ୫- ଓଡିଆମାନଙ୍କ ବିଶ୍ୱାସ ଅନୁସାରେ ଦେବୀଙ୍କ ଶରୀର ଯଦି ମାତ୍ର ଆଠଖଣ୍ଡ ହୋଇପଡିଥିଲା , ତେବେ ଶିବ କ'ଣ ଓଡିଶାରେ ହିଁ ତାଣ୍ଡବ ନୃତ୍ୟ କରିଥିଲେ ?

ଏଇଠି ଆମେ ଆଉ ସମ୍ବେଦନଶୀଳ ପ୍ରଶ୍ନ ଉପରେ ବିଚାର କରିବା । ସତୀ ବା ପାର୍ବତୀ ଯଦି ସମସ୍ତଙ୍କର ମାତା , ତେବେ ତାଙ୍କ ଯୋନୀକୁ ସାର୍ବଜନିକ ଭାବେ ପ୍ରଦର୍ଶନ କରିବା କୌଣସି ସଭ୍ୟ ସମାଜର ନୈତିକ ଆଚରଣ ହୋଇପାରିବ କି ? ସୁଧି ପାଠକେ ବିଚାର କରନ୍ତୁ ।

*********

# ଆତ୍ମା ଏକ ତଥ୍ୟ ନା କେବଳ ତର୍କ

ମୋର ଜଣେ ଆସ୍ତିକ ବନ୍ଧୁ ଦିନେ ସକାଳେ ଖବର କାଗଜଟିଏ ହାତରେ ଧରି ଆମ ଘରକୁ ପଶି ଆସିଲେ। ତାଙ୍କୁ ବନ୍ଧୁତା ଖାତିରରେ ଚାହା କପେ ଦେଇ ଆପ୍ୟାୟିତ କରିବା ପରେ, ସେ ବଡ ଉତ୍ସାହିତ ସ୍ୱରରେ ମୋତେ କହିଲେ- "ଆପଣତ ଆତ୍ମା ନାହିଁ ବୋଲି ସବୁବେଳେ ଯୁକ୍ତି କରୁଛନ୍ତି, ଏଇ ଦେଖନ୍ତୁ ଆଜି ଗୋଟିଏ ଖବର ପ୍ରକାଶ ପାଇଛି। ଜଣେ ପନ୍ଦର ବର୍ଷର ବାଳକ ତା'ର ପୁନର୍ଜନ୍ମ କଥା ବର୍ଣ୍ଣନା କରୁଛି। ଗତ ଜନ୍ମରେ ସେ ଜଣେ ହାସ୍ୟ ଅଭିନେତା ଥିଲା ଏବଂ ଏଇ ଜନ୍ମରେ ସେ ଗୋଟିଏ ଦଳିତ ପରିବାରରେ ଜନ୍ମ ଗ୍ରହଣ କରିଛି। ତାଙ୍କ ଗ୍ରାମର ପାଞ୍ଚ କିଲୋମିଟର ଦୂରରେ ଥିବା ଅନ୍ୟ ଏକ ଗ୍ରାମର ହାସ୍ୟ ଅଭିନେତାଟି ପ୍ରାୟ ପନ୍ଦର ବର୍ଷ ପୂର୍ବରୁ ଏକ ସଡକ ଦୁର୍ଘଟଣାରେ ମୃତ୍ୟୁବରଣ କରିଥିଲା। ହାସ୍ୟ ଅଭିନେତା ହିସାବରେ ତା'ର ଖ୍ୟାତି ଥିଲା। ବାଳକଟି ବର୍ତ୍ତମାନ ନାଟକରେ ହାସ୍ୟ ଅଭିନେତା ହେବାକୁ ଚାହୁଁଛି।" ଖବରଟି ପଢି ଶୁଣାଇବା ପରେ ବନ୍ଧୁ କହିଲେ ଏଥିରୁ କଅଣ ପ୍ରମାଣିତ ହେଉନାହିଁ ଯେ ଆତ୍ମା ନିଶ୍ଚୟ ଅଛି।

ମୁଁ ବନ୍ଧୁଙ୍କର ମୁହଁର ଭାବଭଙ୍ଗୀରୁ ବୁଝି ପାରିଥିଲି ଯେ ସେ ଏହି ଖବରଟିକୁ ନିହାତି ସତ୍ୟ ବୋଲି ବିଶ୍ୱାସ କରୁଛନ୍ତି। ଏହା ଏକ ଅବୈଜ୍ଞାନିକ ତଥା ଭିତ୍ତିହୀନ ବିଶ୍ୱାସ ବୋଲି ମୁଁ ତାଙ୍କୁ ବୁଝେଇଲେ, ସେ ମାନିବେ ନାହିଁ ଏହା ବି ମୁଁ ଜାଣିଛି। ତେଣୁ ତାଙ୍କୁ କହିଲି - ଠିକ୍ ଅଛି। ଆପଣ ଯେଉଁ ଆତ୍ମା କଥା କହୁଛନ୍ତି, ମୁଁ ବି ମାନିବାକୁ ପ୍ରସ୍ତୁତ ଯେ ଆତ୍ମାର ପୁନର୍ଜନ୍ମ ହେଉଛି। ଏଇଠି ପ୍ରଶ୍ନ ଉଠୁଛି- କେବଳ ଆତ୍ମା ଅଛି ବୋଲି ମାନିନେଲେ କ'ଣ ସତ୍ୟ ସିଦ୍ଧ ହୋଇଯିବ ? ଆପଣ କୁହନ୍ତୁ- ଆପଣତ ପିଲାଟି ଦିନରୁ ଏହାକୁ ମାନି ଆସିଛନ୍ତି, ଆପଣଙ୍କ ପୂର୍ବଜନ୍ମର କୌଣସି କଥା କେବେ ମନେ ପଡୁଛି ? ଦିଲ୍ଲୀ, ମାଡ୍ରାସ କିମ୍ବା କଲିକତାରେ ମୃତ୍ୟୁବରଣ କରିଥିବା କୌଣସି ବ୍ୟକ୍ତି ଓଡିଶାରେ ଜନ୍ମ ଗ୍ରହଣ କରିଥିବା ଖବର ପଢିଛନ୍ତି ? ତାମିଲ ଭାଷା ଜାଣିଥିବା

ମୃତ ବ୍ୟକ୍ତି ଓଡିଆ ଘରେ ଜନ୍ମ ହୋଇ କଅଣ ତାମିଲ ଭାଷାରେ ପୂର୍ବଜନ୍ମର କାହାଣୀ ବର୍ଣ୍ଣନା କରୁଥିବା ଖବର ପଢ଼ିଛନ୍ତି ? ସମସ୍ତ ପ୍ରାଣୀଙ୍କ ଦେହରେ ଆତ୍ମା ବାସ କରୁଥିବା କଥା କୁହାଯାଉଛି । ସେହି ମାନ୍ୟତା ଅନୁସାରେ ଆପଣ କଅଣ ମାନବତାବାଦୀହୋଇ ଯାଇଛନ୍ତି ? ମନୁଷ୍ୟର ମୌଳିକ ଏକତା ଓ ସମାନତାକୁ ଆପଣ କ'ଣ ନିଜର ବ୍ୟବହାରିକ ଜୀବନରେ ସ୍ୱୀକାର କରି ସାରିଲେଣି ? ଅଥବା ଆପଣ କେବଳ ପୁନର୍ଜନ୍ମର ମନଗଢା କାହାଣୀ ପଢି ପଢି ହିଁ ମନକୁ ଖୁସି କରୁଛନ୍ତି ?

ବନ୍ଧୁ ଜଣକ ମୋର କୌଣସି ପ୍ରଶ୍ନର ଉତ୍ତର ଦେଇ ପାରିଲେ ନାହିଁ । କହିଲେ - ଆପଣ ନ ମାନିଲେ ନାହିଁ, ବହୁତ ଲୋକ ମାନୁଛନ୍ତି ତେଣୁ ମୁଁ ବି ମାନୁଛି କହି ସେ ମୁହଁ ଫୁଲେଇ ଫେରିଗଲେ ।

ସେ ଫେରିଯିବା ପରେ ମୁଁ ଗୀତାର ଦ୍ୱିତୀୟ ଅଧ୍ୟାୟରେ ଆତ୍ମା ସଂପର୍କରେ ବର୍ଣ୍ଣନା କରାଯାଇଥିବା ଶ୍ଳୋକ ସବୁ ପୁଣିଥରେ ପଢିଲି । "ନୈନଂ ଛିନ୍ଦନ୍ତି ସଂସ୍ତ୍ରାଣୀ, ନୈନଂ ଦହତି ପାବକଃ , ନ ଚୈନଂ କ୍ଳେଦୟନ୍ତ୍ୟାପୋ, ନ ଶୋଷୟତି ମାରୁତଃ ।୨୩।"

ଅର୍ଥାତ୍ : ଆତ୍ମାକୁ କୌଣସି ଶସ୍ତ୍ର କାଟି ପାରିବନି (ଅଛେଦ୍ୟ), ଅଗ୍ନି ଦଗ୍ଧ କରି ପାରିବନି (ଅଦାହ୍ୟ), ଜଳ ଭିଜେଇ ପାରିବନି (ଅକ୍ଳେଧ୍ୟ) ବାୟୁ ଶୁଖେଇ ପାରିବନି (ଅଶୋଷ୍ୟ) ।

ଅଚ୍ଛେଦ୍ୟ ୟମଦାହ୍ୟୋୟ, ମକ୍ଳେଦ୍ୟୋଶାଷ୍ୟ ଏବଚ,
ନିତ୍ୟଃ ସର୍ବଗତଃ ସ୍ଥାଣୁ, ରଚଳୋୟଂ ସନାତନଃ ।୨୪ ।

ଅର୍ଥାତ୍ : ଆତ୍ମାକୁ ହାଣି ହୁଏ ନାହିଁ, ପୋଡି ହୁଏ ନାହିଁ, ଆତ୍ମା ଶୁଖିଲା କିମ୍ବା ଓଦା ହୁଏ ନାହିଁ । ସର୍ବବ୍ୟାପୀ, ଅଚଳ ଓ ଅଟଳ । ଏହାର ବିନାଶ ହେବନାହିଁ ।

ଅବ୍ୟକ୍ତୋୟମଚିନ୍ତ୍ୟୋୟ,
ମବିକାର୍ଯ୍ୟୋୟମୁଚ୍ୟତେ,
ତସ୍ମାଦେବଂ ବିଦିତ୍ୱୈନଂ,
ନାନୁଶୋଚିତୁମର୍ହସି ।୨୫ ।

ଅର୍ଥାତ: ଆତ୍ମା ଅବ୍ୟକ୍ତ, ଅଚିନ୍ତ୍ୟ, ଚିରଦିନ ରହିଛି ଓ ରହିବ । ବିକାର ଶୂନ୍ୟ

ଚିନ୍ତାର ଅଗମ୍ୟ, ତେଣୁ ଜ୍ଞାନୀ ଆତ୍ମା ପାଇଁ ଶୋକ କରେ ନାହିଁ ।

ଏଥିରେ ଆତ୍ମାକୁ ଅଜର ଅମର କରି ପାରିଭାଷିତ କରିବା ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟ ଥିବାଭଳି ଲାଗୁନାହିଁ । ଅର୍ଜୁନକୁ ଜେନ, ତେନ ପ୍ରକାରେଣ ଯୁଦ୍ଧ କରିବାକୁ ରାଜି କରାଇବା ଉଦ୍ଦେଶ୍ୟରେ ସେ ଏହା କହିଥିଲେ । ଜୀବନରେ ନିରାଶ ବୋଧରୁ ଆତ୍ମହତ୍ୟା କରିବାକୁ ଚାହୁଁଥିବା ବ୍ୟକ୍ତିକୁ ବଞ୍ଚେଇବା ପାଇଁ, କେହି ପ୍ରିୟ ପରିଜନ ଯେପରି ବିଭିନ୍ନ ମନ ଭୁଲାଣିଆ ତର୍କ ଦେଇଥାନ୍ତି, ସେହିଭଳି ଶୁରବୀର ଅର୍ଜୁନ ଏକ ମାନସିକ ଦ୍ୱନ୍ଦ୍ୱରେ ଘାରି ହେଉଥିଲେ । ଯୁଦ୍ଧ ନ କରିବା ତାଙ୍କ ପାଇଁ ଆତ୍ମହତ୍ୟା ସମାନ ପରିସ୍ଥିତି ସୃଷ୍ଟି କରିଥିଲା । ସେହି ପରିସ୍ଥିତିରେ ଶ୍ରୀକୃଷ୍ଣ ବିଭିନ୍ନ ତର୍କବିତର୍କ ପ୍ରୟୋଗ କରି ଅର୍ଜୁନଙ୍କ ମନରେ ପରିବର୍ତ୍ତନ ଆଣିପାରିଥିଲେ । ଏହି ସଂଦର୍ଭରେ ଆତ୍ମା ଏବଂ ତା'ର ବିଶେଷତ୍ୱର ବର୍ଣ୍ଣନା କୌଣସି ତଥ୍ୟ ନୁହେଁ ବରଂ କେବଳ ଏକ ତର୍କ ଭଳି ମନେ ହେଉଛି । ଏହି କଥା ଗୀତାର ଦ୍ୱିତୀୟ ଅଧ୍ୟାୟ ୨୬ ଶ୍ଳୋକରେ ଆହୁରି ସ୍ପଷ୍ଟ ହୋଇଯାଉଛି ।

ଅଥଚୈନଂ ନିତ୍ୟଜାତଂ ବା ମନ୍ୟସେ୍ମୃତମ୍
ତଥାପି ତ୍ୱଂ ମହାବାହୋ ନୈନଂ ଶୋଚିତୁମର୍ହସି ।୨୬।

ଅର୍ଥାତ୍ : ଯଦିବା ତୁ ଭାବୁଛୁଆତ୍ମାର ଜନ୍ମ ଓ ମରଣ ଅଛି, ତଥାପି ତୋ' ଭଳି ମହାବାହୁ ଏଥିପାଇଁ ଶୋକ କରିବା ଉଚିତ୍ ନୁହେଁ ।

ଶ୍ରୀକୃଷ୍ଣ ଆତ୍ମାର ଅସ୍ତିତ୍ୱ ଥିବା ଉଲ୍ଲେଖ କରିବା ପରେ ସେହି ଧାରଣାର ବିପରୀତ ବିକଳ୍ପ ବ୍ୟବସ୍ଥା ବି ପ୍ରସ୍ତୁତ କରିଛନ୍ତି । ଅଷ୍ଟାଦଶୋଽଧ୍ୟାୟର ୬୬ ଶ୍ଳୋକରେ କହିଲେ :-

"ସର୍ବଧର୍ମାନ ପରିତ୍ୟଜ୍ୟ, ମାମେକଂ ଶରଣଂବ୍ରଜ ।
ଅହଂ ତ୍ୱାଂ ସର୍ବପାପେଭ୍ୟୋ, ମୋକ୍ଷୟିଷ୍ୟାମି ମା ଶୁଚଃ ।୬୬ ।"

ଅର୍ଥାତ୍ : ଯେତେ ପ୍ରକାର ଧର୍ମଅଛି, ତ୍ୟାଗକରି ମୋ'ଠାରେ ଶରଣ ପଶ, ମୁଁ ସମସ୍ତ ପାପରୁ ଉଦ୍ଧାର କରିଦେବି ।

********

# ମାନବୀୟ ସମସ୍ୟା ଓ ଦୈବୀ ସମାଧାନ

ଆଦିମ କାଳରୁ ମଣିଷ ବିଭିନ୍ନ ପ୍ରକାର ମାନସିକ ଓ ଶାରୀରିକ ସମସ୍ୟାର ସମ୍ମୁଖୀନ ହୋଇ ଆସିଛି । ସମସ୍ୟା ଗୁଡିକର ନିରାକରଣ ବା ସମାଧାନ ସେ ପ୍ରଥମେ ନିଜେ ହିଁ ଖୋଜିବାକୁ ଚେଷ୍ଟା ବି କରିଛି । କିଛି ସମସ୍ୟାର ସମାଧାନ ହୋଇପାରିଛି, ଆଉ କିଛି ସମସ୍ୟାର ସମାଧାନ ତା'ର କ୍ଷମତାର ବାହାରେ ରହିଯାଇଛି । ଖାଇବା ଓ ରହିବା ଭଳି ମୌଳିକ ସମସ୍ୟାର ସମାଧାନ ହୁଏତ ପ୍ରକୃତି କୋଳରୁ ହିଁ ସେ ପାଇଛି କିନ୍ତୁ ସେହି ପ୍ରକୃତିର ଧ୍ୱଂସକାରୀ ରୂପ ଯଥା : ଗ୍ରୀଷ୍ମତାପ, ହିମପାତ, ଲଗାଣବର୍ଷା, ବନ୍ୟା, ବାତ୍ୟା ଓ ଭୂମିକମ୍ପ ଆଦି ସମସ୍ୟାର ସମାଧାନ ତା'ର କ୍ଷମତାର ବାହାରେ ରହିଯାଇଛି । ବିଗତ ସମୟର ମଣିଷ ଜାତି ଅନ୍ୟ ଉପାୟ ନ ଦେଖି କୌଣସି ଦୈବୀଶକ୍ତିର କଳ୍ପନା କରିଥିଲା । ପ୍ରାକୃତିକ ବିପର୍ଯ୍ୟୟ କୌଣସି ଦୈବୀଶକ୍ତିଦ୍ୱାରା ଘଟୁଛି ଏବଂ ତାହାର ସମାଧାନ ବି ସେ ହିଁ କରିପାରିବ ବୋଲି ଏକ (ଭ୍ରାନ୍ତ) ଧାରଣା ଜନ୍ମ ହେଲା । ପରିଣାମ ସ୍ୱରୂପ ଦୈବୀଶକ୍ତିକୁ ବିଭିନ୍ନ ପ୍ରକାରେ ପୂଜା ଓ ପ୍ରାର୍ଥନା ଦ୍ୱାରା ଖୁସି କରେଇ ପାରିଲେ ମଣିଷର ସମସ୍ୟାର ସମାଧାନ ହୋଇପାରିବ ବୋଲି ଧାରଣା ଦୃଢ ହେଲା । ଆଦିମ କାଳରୁ ସେହି ବିଶ୍ୱାସ (?) ଆଜିପର୍ଯ୍ୟନ୍ତ ଅନେକ ଲୋକଙ୍କ ମନରେ ବଞ୍ଚି ରହିଛି ।

ଏଇଠି ପ୍ରଶ୍ନ ଉଠୁଛି- (୧) ସତରେ କ'ଣ କୌଣସି ଦୈବୀଶକ୍ତି ପ୍ରାକୃତିକ ବିପର୍ଯ୍ୟୟ ଗୁଡିକ ପାଇଁ ଦାୟୀ ? (୨) ସତରେ କ'ଣ କେବଳ ମଣିଷର (ଅନ୍ୟ ପ୍ରାଣୀଜଗତ ବ୍ୟତୀତ) ପୂଜା ଓ ପ୍ରାର୍ଥନା ଦ୍ୱାରା ଖୁସି ହୋଇ କୌଣସି ଦୈବୀଶକ୍ତି ପ୍ରାକୃତିକ ବିପର୍ଯ୍ୟୟକୁ ରୋକିଦେଇ ପାରିବ ?

ଆସ୍ତିକବାଦୀମାନେ ପ୍ରଥମ ପ୍ରଶ୍ନର ଉତ୍ତର କହିବେ- ନିଶ୍ଚୟ । ଦୈବୀପ୍ରକୋପ ଯୋଗୁଁ ହିଁ ପ୍ରାକୃତିକ ବିପର୍ଯ୍ୟୟ ଘଟୁଛି । ଦ୍ୱିତୀୟ ପ୍ରଶ୍ନର ଉତ୍ତର ସେମାନେ ଠିକ୍ ଭାବେ ଦେଇପାରିବେ ନାହିଁ । କାରଣ ନିଜ ଅନୁଭବରୁ ହିଁ

ଜାଣନ୍ତି, ଯେତେ ପୂଜା ପ୍ରାର୍ଥନା କଲେ ବି ବାତ୍ୟା, ବନ୍ୟା, ଭୂମିକମ୍ପ ଆଦିକୁ ରୋକାଯାଇ ପାରୁନାହିଁ ।

ସେମାନେ ଶେଷରେ ମନକୁ ସାନ୍ତ୍ୱନା ଦେବା ଭଳି କୁହନ୍ତି- "ସବୁ କିଛି ଈଶ୍ୱରଙ୍କ ଲୀଳା । ସେ ଯାହାର, ଯେମିତି ମୃତ୍ୟୁଯୋଗ ଲେଖିଛନ୍ତି, ସେ ସେମିତି ହିଁ ଭୋଗ କରିବ । ଛାର ମଣିଷ ଭାଗବାନଙ୍କ ଗଭୀର ରହସ୍ୟ କାହୁଁ ବୁଝିପାରିବ ?" ଏଇଠି ସେମାନଙ୍କ ତର୍କ ଶେଷ ହୋଇଯାଉଛି । ଅସହାୟ ବୋଧର ସର୍ବଶେଷ ଅସ୍ତ୍ର ହେଉଛି ଆତ୍ମସମର୍ପଣ ।

କାଳକ୍ରମେ ମଣିଷ ସମାଜରେ କିଛି ବୁଦ୍ଧିବାଦୀ ଲୋକ ନିଜର ଅସହାୟବୋଧକୁ ସ୍ୱୀକାର କରି ତଥାକଥିତ ଦୈବୀଶକ୍ତି ଆଗରେ ଆତ୍ମସମର୍ପଣ କରିନାହାନ୍ତି । ସେମାନେ ନିଜର ତର୍କ ବୁଦ୍ଧି ପ୍ରୟୋଗ କରି ପୂର୍ବ ଧାରଣା ବା ବିଶ୍ୱାସକୁ ଅଲଗା ରଖି ନୂତନ ବିଚାର ସୃଷ୍ଟି କଲେ । ସେଇଥି ପାଇଁ ଜ୍ଞାନ ଓ ବିଜ୍ଞାନର ବିକାଶ ହେଲା । ବୁଦ୍ଧିବାଦୀଙ୍କ ଅନୁସଂଧାନ, ସୁକ୍ଷ୍ମଚିନ୍ତନ, ବାରଂବାର ପରୀକ୍ଷା ନିରୀକ୍ଷା ଓ ଗବେଷଣା ଯୋଗୁଁ ପ୍ରକୃତିର ଚମତ୍କାରୀ ରହସ୍ୟ ମଣିଷ ବୁଝିପାରିଲା । ପ୍ରାକୃତିକ ବିପର୍ଯ୍ୟୟକୁ ରୋକିବା ମଣିଷ ପକ୍ଷେ ସଂଭବ ନହେଲେ ବି ବିପର୍ଯ୍ୟୟ ସମୟରେ କମ୍ ରୁ କମ୍ ସଂଖ୍ୟକ ମଣିଷଙ୍କ ଧନ ଓ ଜୀବନ କ୍ଷତି ହେବାର ଉପାୟ ଖୋଜି ପାଇଛି । ପ୍ରାକୃତିକ ବିପର୍ଯ୍ୟୟର ପୂର୍ବ ଅନୁମାନ ଯୋଗୁଁ ମଣିଷମାନଙ୍କୁ ଆଗରୁ ସତର୍କ କରିବା ସଂଭବ ହୋଇପାରୁଛି । ବିପର୍ଯ୍ୟୟ ଘଟିବା ପରେ ବି କ୍ଷତିଗ୍ରସ୍ତ ମଣିଷ ମାନଙ୍କୁ ଯଥାଶୀଘ୍ର ସାହାଯ୍ୟ କରିବା ସମ୍ଭବ ହୋଇ ପାରୁଛି । ଏହି ସବୁ ସମ୍ଭବ ହୋଇପାରୁଛି କେବଳ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଦ୍ୱାରା । କୌଣସି ଦେବୀ କିମ୍ବା ଦେବତା ବିପଦ ଆସିବାର ପୂର୍ବ ସୂଚନା ଦେଉଥିବା କିମ୍ବା ବିପଦ ପରେ କ୍ଷତିଗ୍ରସ୍ତ ହୋଇଥିବା ମଣିଷଙ୍କୁ ଥଇଥାନ କରିଥିବା କଥା, କେହି ବି ସ୍ୱୀକାର କରିପାରିବେ କି ? ଏହି ଅପ୍ରିୟ ସତ୍ୟକୁ ମାନିବାକୁ ତଥାପି ଅନେକ ଲୋକ ଭୟ କରନ୍ତି ।

ଜଣେ ଆସ୍ତିକବାଦୀ ପ୍ରଶ୍ନ କଲେ ଭଗବାନ ନାହାନ୍ତି ବୋଲି ଭାବିବାକୁ ଡର ଲାଗୁଛି କାହିଁକି ? କୌଣସି ବିପଦ ଉପସ୍ଥିତି ହେଲେ ଆପେ ଆପେ ଭଗବାନଙ୍କ ନାମ ମନେ ପଡ଼ି ଯାଉଛି କାହିଁକି ? ହେତୁବାଦୀ ଉତ୍ତର :- କୌଣସି, ଦୁଃଖ, ବିପଦ ବା ସମସ୍ୟା ଯୋଗୁଁ ମାନସିକ ଅଶାନ୍ତି ସମୟରେ ଭଗବାନଙ୍କ ନାମ ମନେ ପଡିଯିବାଟା ଭଗବାନଙ୍କ ଅସ୍ତିତ୍ୱକୁ ପ୍ରମାଣିତ କରୁନାହିଁ ଆପଣ ଦେଖନ୍ତୁ ଅନେକ ଲୋକଙ୍କ ମୁହଁରୁ ଶାରୀରିକ ପୀଡା କିମ୍ବା ମାନସିକ ଦୁଃଶ୍ଚିନ୍ତା ସମୟରେ 'ଓଃ ମାଆ'' ଭଳି ଶବ୍ଦ ବି ସହଜରେ ବାହାରି ଆସେ । ମାଆ ଜୀବିତ ନଥିଲେ ବି ଚିତ୍କାର ରୂପେ ମାଆକୁ ଡାକ ପଡିଯାଏ । ଏହାର ମାନେ ନୁହେଁ ଯେ ଆମେ ମାଆକୁ ଜୀବିତ ଅଛି ବୋଲି ଭାବୁ କିମ୍ବା ଜୀବିତ ଥିଲେ ବି ସେ ହିଁ ସେହି ସମୟରେ ଆସି ସାହାଯ୍ୟ କରିବ ବୋଲି ଡାକ ପକାଉ । ଏହାର ଅସଲ କାରଣ ହେଉଛି- ମାଆ ପାଖରୁ ଆମେ ଯେଉଁ ସ୍ନେହ, ମମତା ଓ ସମବେଦନା ପାଇ ଆସିଛୁ ସେହି ସ୍ନେହ ସଂରକ୍ଷଣ ଭାବ ହିଁ ଆମ ମନକୁ ପ୍ରଭାବିତ କରି ରଖିଥାଏ ।

ବିପଦ ସମୟରେ ମାଆ ମନେପଡିବା କିମ୍ବା ମାଆକୁ ସମ୍ବୋଧନ କରି ଚିତ୍କାର କରିବା ତ ସହଜରେ ବୁଝା ପଡୁଛି । କାରଣ ଏହା ମାଆ ଓ ସନ୍ତାନ ଭିତରେ ଥିବା ସ୍ନେହ ସାନିଧ୍ୟ ଓ ମାତୃଛାୟାର ସ୍ମୃତିକୁ ପ୍ରମାଣିତ କରୁଛି । ଏହାର ବିପରୀତ ଭଗବାନଙ୍କ ସ୍ମୃତି ବା ଅନୁଭବ କାହାରି ପାଖରେ ନଥାଏ । ତଥାପି ଭଗବାନଙ୍କ ନାମ ମନେ ପଡିଯିବାର କାରଣ ଏକ ଅଲଗା ପାଠ । ପ୍ରତ୍ୟେକ ଧର୍ମର ପରିବାରରେ ଜନ୍ମଗ୍ରହଣ କରିଥିବା ଶିଶୁକୁ ଆରମ୍ଭରୁ ହିଁ ତାଙ୍କର ଭଗବାନଙ୍କ ପ୍ରତି ନିଷ୍ଠାର ସହ ବିଶ୍ୱାସ ରଖି ପୂଜା ଓ ପ୍ରାର୍ଥନା କରିବାକୁ ଶିକ୍ଷା ଦିଆଯାଇଥାଏ । ଧିରେ ଧିରେ ଶିଶୁ ମନରେ ସେହି ବିଶ୍ୱାସ ଗଭୀର ପ୍ରଭାବ ପକାଇଥାଏ । ସେ ବୟସ୍କ ହେବା ପର୍ଯ୍ୟନ୍ତ ସେହି ମନସ୍ତାତ୍ତ୍ୱିକ ପ୍ରଭାବରୁ ନିଜକୁ ମୁକ୍ତ କରିପାରେ ନାହିଁ । ସେଥିପାଇଁ ପ୍ରତ୍ୟେକ ବିପରୀତ

ପରିସ୍ଥିତିରେ 'ହେ ଭଗବାନ' କହିବା ଏକ ଅଭ୍ୟାସରେ ପଡ଼ିଯାଏ । ହିନ୍ଦୀରେ ଗୋଟିଏ ପ୍ରବାଦ ଅଛି- "ଜିସ୍‌କା କୋଇ ନହିଁ ହୋତା ଉସ୍‌କା ଭଗବାନ ହୋତା ହୈ" ଅର୍ଥାତ୍ "ବିପଦ ସମୟରେ ସାହାଯ୍ୟ କରିବାକୁ କୌଣସି ମଣିଷ ନଥିଲେ ବି ଶୂନ୍ୟରେ ଭଗବାନ ଅଛନ୍ତି।" ଏହି ଅନ୍ଧ ବିଶ୍ୱାସ ଯୋଗୁଁ ମୁହଁରୁ 'ହେ ଭଗବାନ' ଚିତ୍କାର ରୂପେ ବାହାରିଥାଏ।

ପ୍ରତ୍ୟେକ ସଚେତନ ବ୍ୟକ୍ତିଙ୍କୁ ଜାଣି ରଖିବା ଉଚିତ ଯେ ମଣିଷ ଜୀବନର ପ୍ରତ୍ୟେକଟି ସମସ୍ୟାର ସଠିକ୍ ସମାଧାନ ଏହି ଦୁନିଆରେ ହିଁ ଅଛି। ସମାଧାନର ଯେଉଁ ସର୍ତ୍ତ ରହିଛି - ତାହା ସମୟ, ସ୍ଥାନ ଓ ପାତ୍ର ଭେଦରେ ଅଲଗା ଅଲଗା ହୋଇପାରେ। ସଫଳତା ଓ ଅସଫଳତାର ପରିସଂଖ୍ୟାନ ବି କମ୍ ବେଶୀ ହୋଇପାରେ। କିନ୍ତୁ ଯେଉଁମାନେ ଭାଗ୍ୟ ଓ ଭଗବାନ ଭରସାରେ ସମସ୍ୟାର ସମାଧାନ ଆଶାରେ ଟାକି ବସନ୍ତି, ସେମାନଙ୍କ ପରିମାଣ ଶୂନ। ଯଦିବା କେଉଁଠି ସଫଳତା ମିଳିଥାଏ ତାହା କେବଳ କାକତାଳିକ ସଂଯୋଗ ମାତ୍ର। କାକତାଳୀୟ ନ୍ୟାୟରେ ସଫଳତା ଥରେ ମିଳିଯାଇପାରେ ବାରଂବାର ନୁହେଁ।

*********

# ବାବାମାର୍କା ନକଲି ଧନ୍ଦା

ଦୁନିଆରେ ସମସ୍ତ ଦେଶରେ ପ୍ରତ୍ୟେକ ଧର୍ମ ଓ ସଂପ୍ରଦାୟ ମଧ୍ୟରେ ତଥାକଥିତ ବାବାମାର୍କା ନକଲି ଧନ୍ଦା ଚାଲିଛି । ଆମ ଦେଶରେ କିନ୍ତୁ ଏହି ଧନ୍ଦା ଅପେକ୍ଷାକୃତ ଟିକିଏ ବେଶୀ ପରିମାଣରେ ଚାଲିଛି । ବାବାମାର୍କାର ଅର୍ଥ ସମାଜର କିଛି ସ୍ୱତନ୍ତ୍ର ବର୍ଗର ଲୋକ, ଯେଉଁମାନେ ଆତ୍ମା-ପରମାତ୍ମା, ସ୍ୱର୍ଗ-ନର୍କ, ପାପ-ପୁଣ୍ୟ, ତୀର୍ଥ, ବ୍ରତ, ଉପବାସ, ଚମତ୍କାର, ପୁନର୍ଜନ୍ମ ଆଦି କାଳ୍ପନିକ ଭିତ୍ତିହୀନ ବିଶ୍ୱାସକୁ ନେଇ ସଫଳ ବ୍ୟବସାୟ କରୁଛନ୍ତି । ନିଜକୁ ଈଶ୍ୱରଙ୍କ ଦୂତ କିମ୍ବା ସ୍ୱୟଂ ଭଗବାନ ରୂପେ ଘୋଷଣା କରି ସରଳ ଜନତାକୁ ପ୍ରଭାବିତ କରିପାରୁଥିବା ଲୋକମାନଙ୍କୁ ଜନସାଧାରଣ ସାଧୁ, ମହାତ୍ମା, ସନ୍ଥ, ସ୍ୱାମୀ, ଆଚାର୍ଯ୍ୟ, ପୂଜାରୀ, ଗ୍ରନ୍ଥୀ, ମୌଲାନା, ପାଦ୍ରୀ ଆଦି ବିଭିନ୍ନ ନାମରେ ସଂବୋଧନ କରିଥାନ୍ତି । ସେମାନଙ୍କ ବେଶଭୂଷା, ସାଧାରଣ ଜନତାଙ୍କଠାରୁ ଅଲଗା ହୋଇଥାଏ । ବିଭିନ୍ନ ସଂପ୍ରଦାୟର ବାବାମାନଙ୍କ ବେଶଭୂଷା ଅଲଗା ହେଲେ ବି ସେମାନଙ୍କ ଉଦ୍ଦେଶ୍ୟ ହେଉଛି ଏକ । ତାହା ହେଉଛି ଲୋକମାନଙ୍କୁ ମାନସିକ ସ୍ତରରେ ପଙ୍ଗୁ ବନେଇ, ଅଲୌକିକ ଜଗତର ମୋହ ଦେଖାଇ ମାନସିକ, ଶାରୀରିକ ଓ ଆର୍ଥିକ ଶୋଷଣ କରିବା ।

କିଛି ବର୍ଷ ପୂର୍ବରୁ ଏହି ଧନ୍ଦା ସହର ଅପେକ୍ଷା ଗାଁମାନଙ୍କରେ ବେଶୀ ଚାଲୁଥିଲା । ଆଜିକାଲି ଆଧୁନିକ ବୈଦ୍ୟୁତିକ ଉପକରଣ ଯଥା- ଟିଭି, ଇଣ୍ଟରନେଟ୍, ମୋବାଇଲ୍ ଆଦିର ବହୁଳ ବ୍ୟବହାର ହେବା ଫଳରେ ବାବାମାନଙ୍କର ଧନ୍ଦା ବହୁଗୁଣରେ ବଢିଯାଇଛି । ସେମାନଙ୍କ ଚମତ୍କାରୀ ଗୁଣ ବା ଶକ୍ତି ସଂପର୍କରେ ମନଗଢା କାହାଣୀକୁ ଅତିରଂଜିତ କରି ଖୁବ୍ କମ୍ ସମୟରେ, ଅଧିକ ଲୋକଙ୍କ ଭିତରେ ପ୍ରଚାର ହୋଇପାରୁଛି । ପ୍ରତିଦିନ ବିଭିନ୍ନ ଟିଭି ଚ୍ୟାନେଲରେ କେହି ନା କେହି ବାବା ବିଚିତ୍ର ବେଶ ଧାରଣ କରି ନାଟକୀୟ ଶୈଳୀରେ ପ୍ରବଚନ ଦେଉଥିବା କିମ୍ବା ଦୈନିକ ରାଶିଫଳ ପଢୁଥିବା

ଦୃଶ୍ୟ ଦେଖିବାକୁ ମିଳୁଛି । ତା ସହିତ ଧନ, ସମ୍ମାନ, ଜ୍ଞାନର ବୃଦ୍ଧିପାଇଁ ବିଭିନ୍ନ ଚମତ୍କାରୀ ମୁଦି, ତାବିଜ, ଶ୍ରୀଯନ୍ତ୍ର ବିକ୍ରି କରୁଛନ୍ତି । ମହିଳାମାନେ ବି ବାବାମାର୍କାଧନ୍ଦା କରିବାରେ ପଛରେ ନାହାଁନ୍ତି । ସେମାନେ ମଥାରେ ବିଭିନ୍ନ ଷ୍ଟାଇଲରେ ଚନ୍ଦନ, ବିଭୂତି, କିମ୍ବା ସିନ୍ଦୂର ଲଗେଇ ଥାନ୍ତି । ହାତରେ ବେକରେ, କାନରେ ମହଂଗା ଗହଣା ବି ପିନ୍ଧିଥାନ୍ତି । ବାବାମାନଙ୍କ ବସିଥିବା ଆସନ ଏବଂ ଆଖପାଖର ସାଜସଜ୍ଜା ଦେଖିଲେ ଲାଗିବ ଯେମିତି କୌଣସି, ପୌରାଣିକ ନାଟକର ରାଜଦରବାର ସଜା ହୋଇଛି । ସୁସଜ୍ଜିତ ସିଂହାସନରେ ବସି, ପ୍ରଭାବଶାଳୀ କଣ୍ଠରେ, ଧର୍ମଶାସ୍ତ୍ରରୁ ଉଦ୍ଧୃତ କିଛି ସଂସ୍କୃତ ଶ୍ଳୋକ ଉଚ୍ଚାରଣ ପୂର୍ବକ ନିଜର ପ୍ରବଚନ ଆରମ୍ଭ କରିଥାନ୍ତି । ଜଣେ ସଫଳ ପ୍ରବଚକ ହେବାପାଇଁ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଗୁଣ ହେଉଛି-ସେମାନଙ୍କ ବାକ୍‌ଚତୁରୀ । କଥା କହିବାର ଢଙ୍ଗ ଯାହାର ଯେତିକି ମନମୋହକ, ତାର ଭକ୍ତଙ୍କ ସଂଖ୍ୟା ସେତେ ଅଧିକ । ଅର୍ଥାତ ଦାନ, ଦକ୍ଷିଣାର ପରିମାଣ ବି ସେତିକି ଅଧିକ ହୋଇଥାଏ ।

ଆଗରୁ ବାବାମାନେ ଜଂଗଲ, ପାହାଡ ଓ ପଥର ଗୁମ୍ଫାମାନଙ୍କରେ ରହୁଥିଲେ । ଆଜିକାଲି ସେମାନେ ହାଇଟେକ୍ ବାବା, ସେମାନଙ୍କ ଆଶ୍ରମ ହାଇଟେକ୍ ଏବଂ ସେମାନଙ୍କ ବ୍ୟବସାୟ ବି ହାଇଟେକ୍ ହୋଇଗଲାଣି । ସେମାନଙ୍କ ବ୍ୟବସାୟ ନ୍ୟାସନାଲ୍ ସ୍ତରରୁ ଇଣ୍ଟରନ୍ୟାସନାଲ ସ୍ତରକୁ ବ୍ୟାପି ଗଲାଣି । ଅନେକ ବିକଶିତ ତଥା ଧନୀ ଦେଶରେ ବାସ କରୁଥିବା ଧର୍ମଭୀରୁ ଭକ୍ତମାନଙ୍କ ସଂଖ୍ୟା ବୃଦ୍ଧି ପାଉଥିବାରୁ ବାବାମାର୍କା ଧନ୍ଦା ବି ଦିନକୁ ଦିନ ବଢି ଚାଲିଛି ।

ସମାଜର ସାଂସାରିକ ଜୀବନକୁ ନିର୍ବାହ କରିବା ପାଇଁ ମାନସିକ ଓ ଶାରୀରିକ ପରିଶ୍ରମ କରିବାକୁ ପଡୁଛି । ଚାକିରୀ କିମ୍ବା ବ୍ୟବସାୟକରି ଧନ ରୋଜଗାର କରିବା ପାଇଁ ଯୁବକ, ଯୁବତୀଙ୍କୁ ଅନେକ ପାଠ ପଢିବାକୁ ପଡୁଛି । ବୈଷୟିକ ଜ୍ଞାନ ହାସଲ କରିବା ପାଇଁ ରାତି, ଦିନ କଠିନ ପରିଶ୍ରମ କରିବାକୁ ପଡୁଛି ।

ଏହାର ବିପରୀତ ବାବାମାର୍କା ଧନ୍ଦା କରିବା ପାଇଁ ଏତେ ବେଶୀ ପରିଶ୍ରମ କରିବା ଆବଶ୍ୟକ ନାହିଁ । କଥା କଥାରେ ଭୂଆଁ ବୁଲେଇ ଅନ୍ୟମାନଙ୍କୁ ପ୍ରଭାବିତ କରିବା ଭଳି ବାକ୍‌ଚାତୁରୀ ଗୁଣଟି ଯାହା ପାଖରେ ଅଛି, ସେ ସାମାନ୍ୟ ଶିକ୍ଷାଗତ ଯୋଗ୍ୟତା ପ୍ରାପ୍ତକରି, କେବଳ କିଛି ଧର୍ମଶାସ୍ତ୍ରର ଶ୍ଳୋକ ମୁଖସ୍ଥ କରିପାରିଲେ ଯଥେଷ୍ଟ । ଅଭ୍ୟାସ କ୍ରମେ କୌଣସି ବୟସ୍କ ବାବାଙ୍କଠାରୁ ହସ୍ତଚାଳନ ବିଦ୍ୟା ଶିକ୍ଷାକରି, ଭକ୍ତମାନଙ୍କୁ ଚମତ୍କାର ପ୍ରଦର୍ଶନ କରିପାରିଲେ, ଖୁବ୍ ଶୀଘ୍ର ପ୍ରସିଦ୍ଧି ଲାଭ କରିଥାନ୍ତି । କାକତାଳୀୟ ନ୍ୟାୟରେ ବାବା କହିଥିବା କୌଣସି ସଫଳତା ଯଦି ଭକ୍ତ ପାଇଯାଏ, ତେବେ ବାବାଙ୍କ ପ୍ରଚାର ଓ ପ୍ରସାରରେ ଭକ୍ତ ଶତମୁଖ ହୋଇଯାଏ ।

ସମସ୍ତ ପ୍ରକାର ବାବା ଭକ୍ତଙ୍କ ଭୂତ, ବର୍ତ୍ତମାନ ଓ ଭବିଷ୍ୟତର ପ୍ରତ୍ୟେକ ସମସ୍ୟାକୁ ସମାଧାନ କରିପାରିବା ଦାବି କରିଥାନ୍ତି । ସମସ୍ତେ ନିଜର ଜ୍ଞାନ ଓ ଅଲୌକିକ ଶକ୍ତିକୁ ହିଁ ସତ୍ୟ ଏବଂ ଅନ୍ୟର ମିଛ ବୋଲି ପ୍ରଚାର କରୁଛନ୍ତି । କୌଣସି ବାବା ଆଜିର ବିକଶିତ ବିଜ୍ଞାନ, ଜୀବନ ଦର୍ଶନ, ଆବିଷ୍କାର, ଗବେଷଣା ଓ ଅନୁସଂଧାନଦ୍ୱାରା ଉପଲବ୍ଧ ଜ୍ଞାନକୁ ମୁକ୍ତ କଣ୍ଠରେ ପ୍ରଶଂସା କରୁନାହାନ୍ତି । ଏହାର ବିପରୀତ ସେମାନେ କହୁଛନ୍ତି- 'ଶହ ଶହ ବର୍ଷର ପୁରାତନ ଆଧ୍ୟାତ୍ମଜ୍ଞାନ ଆଜିର ବୈଜ୍ଞାନିକ ଜ୍ଞାନ ଯୋଗୁଁ ମଳିନ ପଡିଯାଇଛି । ଲୋକମାନେ ଭୌତିକ ସୁଖ ପାଇବା ପାଇଁ ଆଧ୍ୟାତ୍ମ ମାର୍ଗରୁ ଦୂରେଇ ଯାଉଛନ୍ତି । ଆଜିର ସମାଜରେ ବ୍ୟାପ୍ତ ଅବ୍ୟବସ୍ଥା, ଶୋଷଣ, ଅତ୍ୟାଚାର, ହତ୍ୟା ଆଦି ପାଇଁ ଆଧ୍ୟାତ୍ମିକ ଜ୍ଞାନର ଅଭାବକୁ ସେମାନେ ଦାୟୀ କରିଥାନ୍ତି ।'

ଏଇଠି ପ୍ରଶ୍ନ ଉଠୁଛି ମଣିଷ ସମାଜର ଗଠନ ପରଠାରୁ କେଉଁ ଯୁଗ ବା କାଳରେ ଶୋଷଣ, ଅତ୍ୟାଚାର, ହତ୍ୟା ଓ ଅବ୍ୟବସ୍ଥା ନ ଥିଲା ? ଯେଉଁ ଯୁଗ ମାନଙ୍କରେ ବିଜ୍ଞାନ ନିମ୍ନ ସ୍ତରରେ ଏବଂ ଆଧ୍ୟାତ୍ମ ଜ୍ଞାନ ଚରମ ସ୍ତରରେ

ଥିଲା, ସେତେବେଳେ କଅଣ ମଣିଷ (ଦେବତାମାନେ ବି) ସୁଖ ଓ ଶାନ୍ତିରେ ରହି ପାରୁଥିଲେ କି ? ଦ୍ୱିତୀୟତଃ ଆଜି ଯେଉଁ ସଂସାର ତ୍ୟାଗୀ, ସିଦ୍ଧ ପୁରୁଷ ଓ ବ୍ରହ୍ମଚାରୀମାନେ ବିଜ୍ଞାନ ଓ ଭୌତିକ ସାଧନକୁ ରାତି ଦିନ ପ୍ରବଚନ ମାଧ୍ୟମରେ ସମାଲୋଚନା କରୁଛନ୍ତି । ସେହି ଭଣ୍ଡ ସିଦ୍ଧ ପୁରୁଷମାନେ ବିଜ୍ଞାନଦ୍ୱାରା ଉତ୍ପାଦିତ ସମସ୍ତ ଭୌତିକ ସାଧନାକୁ ବ୍ୟବହାର ଏବଂ ଉପଭୋଗ କରୁଛନ୍ତି କାହିଁକି ? ସେମାନଙ୍କ ମଠ ବା ଆଶ୍ରମରେ କ'ଣ ବା ନାହିଁ ? ଯୋଗାଯୋଗ ପାଇଁ ମୋବାଇଲ୍, ଅନ୍‌ଲାଇନ ବ୍ୟବସାୟ ପାଇଁ ଇଣ୍ଟରନେଟ୍ ଲାଗିଥିବା କମ୍ପ୍ୟୁଟର ଆଦି । ନାରୀ ଓ ନିଶା ଦ୍ରବ୍ୟ ସେବନ କରୁଥିବା ଅନେକ ବାବା ଧରା ପଡି ଆଜି ଜେଲଦଣ୍ଡ ଭୋଗ କରୁଛନ୍ତି । ନିଜର ସୁରକ୍ଷା ପାଇଁ ବନ୍ଧୁକଧାରୀ ସୁରକ୍ଷା କର୍ମଚାରୀ ନିଯୁକ୍ତ କରିଥାନ୍ତି ।

କିଛିଲୋକ ଯୁକ୍ତି କରନ୍ତି-ସମସ୍ତ ବାବା ଖରାପ ନୁହଁନ୍ତି । ଅଳ୍ପ କିଛି ଧୂର୍ତ୍ତବାବାଙ୍କ ଯୋଗୁଁ ସମସ୍ତ ବାବାଙ୍କୁ ଦୋଷ ଦେବା ଉଚିତ ନୁହେଁ । ଏଇଠି ପ୍ରଶ୍ନ ଉଠୁଛି-ଆତ୍ମା-ପରମାତ୍ମା, ସ୍ୱର୍ଗ, ନର୍କ, ପୁନର୍ଜନ୍ମ, ମୋକ୍ଷ ଭଳି କେତେକ କାଳ୍ପନିକ ଅସତ୍ୟକୁ ନେଇ ଚାଲିଥିବା ବ୍ୟବସାୟ ସତ୍ୟ ହେବ କିପରି ? ନକଲି ବସ୍ତୁର ବ୍ୟବସାୟ କରୁଥିବା ବାବାମାନଙ୍କୁ ଭଲ ବା ସତ୍ୟ ବୋଲି କେମିତି କହିବା ?

*********

# ଅହେତୁକ ବିଶ୍ୱାସର ହେତୁ

ବିଶ୍ୱାସ ମଣିଷର ଏକ ସଂବେଦନଶୀଳ ଗୁଣ ବା ପ୍ରବୃତ୍ତି । ମନୁଷ୍ୟ ବ୍ୟତୀତ ଅନ୍ୟ ପ୍ରାଣୀ ଜଗତରେ ବି ବିଶ୍ୱାସ ରୂପକ ଗୁଣ ରହିଛି । ବିଶେଷ କରି ଗୃହ ପାଳିତ ପଶୁ ଓ ପକ୍ଷୀମାନେ ବି ମଣିଷ ପ୍ରତି ବିଶ୍ୱାସ କରିଥାନ୍ତି । ବିଶ୍ୱାସ ଶବ୍ଦର ପୂର୍ବରୁ ଅହେତୁକ ଶବ୍ଦଟି ଯୋଡିଦେଲେ ବିଶ୍ୱାସର ମୂଳ ସ୍ତମ୍ଭ ଦୋହଲି ଯାଏ । ମଣିଷ ଚିନ୍ତାଗ୍ରସ୍ତ ହୋଇପଡେ । କାରଣ ଯେଉଁ ବିଶ୍ୱାସ ଯୋଗୁଁ ସେ ଏପର୍ଯ୍ୟନ୍ତ ଶାନ୍ତି ପାଉଥିଲା, ସେହି ଶାନ୍ତି ଭଂଗ ହୋଇ ସେ ବିଷାଦରେ ବୁଡିଯାଏ । ଆଜି ପର୍ଯ୍ୟନ୍ତ ସେ ଯେଉଁ ବ୍ୟକ୍ତି, ଘଟଣା କିମ୍ବା ଅସ୍ତିତ୍ୱକୁ ଦୃଢତାର ସହ ବିଶ୍ୱାସକରି ଆସୁଥିଲା, ସେହି ବ୍ୟକ୍ତି ଦ୍ୱାରା କ୍ଷତିଗ୍ରସ୍ତ ହେବା, ସେହି ଘଟଣାର ସତ୍ୟତା ମିଥ୍ୟାରେ ପରିଣତ ହେବା କିମ୍ବା ସେହି ଅସ୍ତିତ୍ୱର ନକରାତ୍ମକ ପ୍ରଭାବ ଅନୁଭବ କଲାପରେ ସେ ଚିନ୍ତା କରିବାକୁ ବାଧ୍ୟ ହୁଏ ଯେ ସେ ଅହେତୁକ ବିଶ୍ୱାସର ଶିକାର ହୋଇପଡିଛି । ଗୃହ ପାଳିତ ପଶୁ ଓ ପକ୍ଷୀମାନେ ବି ଅହେତୁକ ବିଶ୍ୱାସର ଶିକାର ହୋଇଥାନ୍ତି । ଉଦାହରଣ ହେଉଛି- ଗାଈ, ଛେଳି, ମେଣ୍ଢା, ଘୁଷୁରି, ବତକ, କୁକୁଡା ଇତ୍ୟାଦି । ଯେଉଁ ମଣିଷମାନଙ୍କ ଘରେ ସେମାନେ ଯତ୍ନର ସହ ପାଳିତ ହୋଇଥାନ୍ତି । ଯେଉଁ ମଣିଷମାନଙ୍କୁ ସେମାନେ ନିଜର ଶୁଭଚିନ୍ତକ ଓ ସୁରକ୍ଷାଦାତା ଭାବି ତାଙ୍କର ସବୁ ନିର୍ଦ୍ଦେଶ ପାଳନ କରିଥାନ୍ତି, ସେହି ମଣିଷମାନେ ହିଁ ଦିନେ ପଶୁ ଓ ପକ୍ଷୀମାନଙ୍କୁ ନିଜର ଆହାର ପାଇଁ ହତ୍ୟା କରିଦିଅନ୍ତି । ଏଭଳି କ୍ଷେତ୍ରରେ ପଶୁ ଓ ପକ୍ଷୀମାନେ- ଅହେତୁକ ବିଶ୍ୱାସକୁ ସୁଧାରିବା ପାଇଁ ସମୟ ପାଇ ନଥାନ୍ତି । ମଣିଷ ମାନଙ୍କୁ କରୁଥିବା ଅହେତୁକ ବିଶ୍ୱାସ ଯୋଗୁଁ ପଶୁ ପକ୍ଷୀମାନେ ଜୀବନ ହରେଇ ଦିଅନ୍ତି ।

ମଣିଷମାନଙ୍କ କଥା କିନ୍ତୁ ଅଲଗା । ବିଶ୍ୱାସ ଯୋଗୁଁ କ୍ଷତି ହେଲେ କିମ୍ବା ଧୋକା ଖାଇଲେ ନିଜର ତର୍କ ବୁଦ୍ଧି ପ୍ରୟୋଗ କରି ସେମାନେ ବୁଝି ପାରନ୍ତି- ଏହା ବିଶ୍ୱାସ ନୁହେଁ ଏକ ଅହେତୁକ ବିଶ୍ୱାସ । ଭବିଷ୍ୟତରେ ଅନ୍ଧଭଳି

ବିଶ୍ୱାସ ନକରି ନିଜକୁ ସୁରକ୍ଷିତ କରିବା ଉପାୟ ଚିନ୍ତାକରି ପାରନ୍ତି । ଅନେକ ସମୟରେ ମନୁଷ୍ୟମାନେ ନିଜର ଅହେତୁକ ବିଶ୍ୱାସ ଯୋଗୁଁ ଧନ, ସମ୍ମାନ ସହିତ ପ୍ରାଣ ମଧ୍ୟ ହରାଇଥାନ୍ତି । ଧନ ଓ ସମ୍ମାନ ହୁଏତ ପୁନଃ ପ୍ରାପ୍ତି ହୋଇପାରେ କିନ୍ତୁ ପ୍ରାଣ ଗଲେ ପୁନଃ ପ୍ରାପ୍ତି ସମ୍ଭବ ନୁହେଁ । ଅହେତୁକ ବା ଭିତ୍ତିହୀନ ବିଶ୍ୱାସକୁ ପ୍ରଚାର କରି ଆଦିମ କାଳରୁ ଅନେକ ଧୂର୍ତ୍ତ ବ୍ୟକ୍ତି ଜନ ସମାଜକୁ ମାନସିକ ଶୋଷଣ କରି ଆସୁଛନ୍ତି । ଯାହା ନାହିଁ, ତାହା ଶୂନ୍ୟରେ ଅଛି, ଯାହା ଦୁନିଆରେ ଅଛି, ତାହା ସବୁ ମାୟା କହି ଜନମାନସକୁ ଭ୍ରମିତ କରି ରଖିଛନ୍ତି । ସେହି ଧୂର୍ତ୍ତ ଓ ଚତୁର ଲୋକମାନଙ୍କ ସଂଖ୍ୟା ଆମେ ହୁଏତ ହାତ ଆଙ୍ଗୁଠିରେ ଗଣନା କରି ପାରିବା କିନ୍ତୁ ସେମାନଙ୍କ ଦ୍ୱାରା ଶୋଷିତ ହେଉଥିବା ମଣିଷମାନଙ୍କ ସଂଖ୍ୟା ଆଜିର ସୁପର କମ୍ପୁଟରରେ ବି ସମ୍ଭବ ନୁହେଁ

ମଣିଷର ଏହି ବିଶେଷ ଗୁଣ 'ବିଶ୍ୱାସ' ଆଜି ପର୍ଯ୍ୟନ୍ତ ମହା ମନୀଷିମାନଙ୍କ ଦ୍ୱାରା ଯେତେ ତର୍କ ସମ୍ମତ ବ୍ୟାଖ୍ୟାକୁ ନେଇ ଗ୍ରନ୍ଥମାନ ରଚନା କରାଯାଇଛି, ଅହେତୁକ ବିଶ୍ୱାସ ଉପରେ, ସେତିକି ଗ୍ରନ୍ଥ ରଚନା ହୋଇ ନାହିଁ । ଯାହାର ପରିଣାମ ଆଜିର ଯୁଗରେ ଅତିଭୟାବହ ରୂପ ଧାରଣ କରିଛି ।

ଭୌତିକ ଜଗତରେ ବ୍ୟବସାୟିକ ଦୃଷ୍ଟିରୁ କେହି ଜଣକୁ ବା ଗଣଙ୍କୁ ବୋକା ବନେଇ, ବିଶ୍ୱାସ ସୃଷ୍ଟି କରି, ନିଜର ଉତ୍ପାଦନ ବିକ୍ରିକରି, ଅସତ୍ ଉପାୟରେ ଧନ ଲୁଟି ନେଉଥିବା କଥା ସମସ୍ତେ ସ୍ୱୀକାର କରିବେ । ବିଡମ୍ବନା ହେଉଛି ଯେ ଅଧିଭୌତିକ ଜଗତର ସଂପୂର୍ଣ୍ଣ କାଳ୍ପନିକ ସ୍ୱର୍ଗ ଓ ମୋକ୍ଷ ପ୍ରାପ୍ତିର ଲୋଭ ଦେଖାଇ କେହି ସମଗ୍ର ମଣିଷ ସମାଜକୁ ବିଶ୍ୱାସ ଦ୍ୱାରା ବଶୀଭୂତ କରି ଧୋକା ଦେଉଥିବା କଥାକୁ ଅଧିକାଂଶ ଲୋକ ସହଜରେ ସ୍ୱୀକାର କରିପାରନ୍ତି ନାହିଁ ।

ଆଦିମ କାଳରୁ ପ୍ରଚଳିତ ଆତ୍ମା, ପରମାତ୍ମା, ସ୍ୱର୍ଗ, ନର୍କ, ମୋକ୍ଷ,

ଭାଗ୍ୟ ଓ ପୁନର୍ଜନ୍ମ ଗୁଡିକର ଯଥାର୍ଥ ଆଜିଯାଏଁ କୌଣସି ପ୍ରକାରେ ପ୍ରମାଣିତ ହୋଇ ନଥିଲେ ବି, ଦେଶ ଓ ଦୁନିଆର ଅଧିକାଂଶ ଲୋକ ଅହେତୁକ ବିଶ୍ୱାସ ଉପରେ ଏଗୁଡିକ ପର୍ଯ୍ୟବସିତ ବୋଲି ମାନିବାକୁ ପ୍ରସ୍ତୁତ ନୁହନ୍ତି । ବିଭିନ୍ନ ଦେଶରେ, ବିଭିନ୍ନ ସମୟରେ ଅନେକ ବୁଦ୍ଧିବାଦୀ, ମୁକ୍ତ ଚିନ୍ତକ ଓ ହେତୁବାଦୀ ବ୍ୟକ୍ତି ବିଶ୍ୱାସ ଓ ଅହେତୁକ ବିଶ୍ୱାସ ମଧ୍ୟରେ ଥିବା ହେତୁ ବା ମୌଳିକ କାରଣଗୁଡିକୁ ବୁଝି ପାରି, ସେମାନେ ବିଭିନ୍ନ ପ୍ରମାଣ, ତର୍କ, ପରୀକ୍ଷଣ ଓ ଉଦାହରଣ ପ୍ରସ୍ତୁତ କରି ଜନତାଙ୍କୁ ବୁଝେଇବା ପାଇଁ ଚେଷ୍ଟା କରି ଆସୁଛନ୍ତି । ମୌଳବାଦୀ ମାନଙ୍କଦ୍ୱାରା ଘୋର ବିରୋଧ ସତ୍ତ୍ୱେ ଧିରେ ଧିରେ ଲୋକମାନଙ୍କ ମନରେ ଧାର୍ମିକ ବିଶ୍ୱାସ ପ୍ରତି ସନ୍ଦେହ ସୃଷ୍ଟି ହେଲାଣି । ବୈଜ୍ଞାନିକ ଦୃଷ୍ଟି କୋଣରୁ ବିଚାରକରି ଅନେକ ରଢିବାଦୀ ଧାର୍ମିକ କର୍ମକାଣ୍ଡକୁ ନିଜର ଦୈନିକ କାର୍ଯ୍ୟକ୍ରମରୁ ବିଦା କରିସାରିଲେଣି । 'ଭାଗ୍ୟରେ ଯାହା ଲେଖାଥିବ, ତାହା ହିଁ ପ୍ରାପ୍ତ ହେବ' ଭଳି ଭିତ୍ତିହୀନ ବିଶ୍ୱାସକୁ ତ୍ୟାଗ କରି କଠୋର ପରିଶ୍ରମ କଲେ ସଫଳ ହେବାକୁ ବିଶ୍ୱାସ କଲେଣି । ଏହା ଏକ ଶୁଭ ସୂଚନା । ତଥାକଥିତ ବାବା, ମାତା, ତାନ୍ତ୍ରିକ, ଗୁଣିଆ, ଜ୍ୟୋତିଷୀମାନଙ୍କ ଦ୍ୱାରା ବାରମ୍ବାର ଧୋକା ଖାଇ ଆସୁଥିବା ଜନତା ବୁଝିଗଲେଣି- ଭିତ୍ତିହୀନ ବିଶ୍ୱାସର ପରିଣାମ କେତେ କ୍ଷତି କାରକ ?

ଧାର୍ମିକ ଭିତ୍ତିହୀନ ବିଶ୍ୱାସର ଅନେକ ଅନେକ ଉଦାହରଣ ରହିଛି । ଦୂର ଦୂରାନ୍ତରେ ଥିବା ଦୁର୍ଗମ ପାହାଡରେ ଅବସ୍ଥାନ କରୁଥିବା ପ୍ରସିଦ୍ଧ ଦେବ, ଦେବୀଙ୍କ କୃପା ପ୍ରାପ୍ତ ଆଶାରେ ତୀର୍ଥ ଯାତ୍ରା କରୁଥିବା ଭକ୍ତମାନେ ଦୁର୍ଘଟଣାର ସମ୍ମୁଖୀନ ହୁଅନ୍ତି ୨୦୧୩ ମସିହା, ଜୁନ୍ ମାସରେ ଉତ୍ତରାଞ୍ଚଳରେ ଘଟିଥିବା ଦୁର୍ଘଟଣାଜନିତ ତୀର୍ଥଯାତ୍ରୀଙ୍କ ମୃତ ସଂଖ୍ୟା ୨୫୦୦୦ ରୁ ଉର୍ଦ୍ଧ୍ୱ ବୋଲି ଗଣମାଧ୍ୟମରେ ପ୍ରସାର ହୋଇଥିଲା । ବିଭିନ୍ନ ଧାର୍ମିକ ମେଳା ଆଦିରେ ଦଳା ଚକଟା ଯୋଗୁଁ ଅନେକ ନିରୀହ ମଣିଷଙ୍କ ପ୍ରାଣହାନୀ ଘଟିଥାଏ । ଭିନ୍ନ ଭିନ୍ନ

ଧର୍ମ ସଂପ୍ରଦାୟ ମଧ୍ୟରେ ହିଂସାତ୍ମକ ପ୍ରତିଯୋଗିତା ଯୋଗୁ ନିର୍ଦ୍ଦୋଷ ଲୋକମାନଙ୍କର ପ୍ରାଣ ହାନୀ ଘଟିଥାଏ । କେତେକ ତାନ୍ତ୍ରିକ ଓ ଗୁଣିଆମାନଙ୍କର ପ୍ରରୋଚନା ଯୋଗୁ ନରବଳି ଦେବା ଭଳି ଅମାନବୀୟ ଅପରାଧ ଘଟିଥାଏ । ଡାହାଣୀ ସନ୍ଦେହରେ ଆମ ରାଜ୍ୟରେ ବି ଅନେକ ସ୍ତ୍ରୀ ଓ ପୁରୁଷ ହିଂସାର ଶିକାର ହେଉଛନ୍ତି ।

ଶେଷରେ ପ୍ରଶ୍ନ ଉଠୁଛି- ଉପରୋକ୍ତ ସମସ୍ୟା ଗୁଡିକର କ'ଣ ସତରେ କିଛି ସମାଧାନ ନାହିଁ ? ସମାଧାନ ଅଛି । ଯଦି ଭକ୍ତଗଣ ନିଜର ତର୍କ ବୁଦ୍ଧି ପ୍ରୟୋଗ କରି, ଅହେତୁକ ବିଶ୍ୱାସ ତ୍ୟାଗକରି, ନିଜ ଘରେ ହିଁ ନିଜ ନିଜର ଆରାଧ୍ୟ ଦେବୀ, ଦେବତାଙ୍କୁ ପୂଜା ଅର୍ଚ୍ଚନା କରି ମନକୁ ସାନ୍ତ୍ୱନା ଦେଇପାରିବେ ତେବେ ଖୁବ ଶୀଘ୍ର ମଣିଷ ସମାଜରେ ଏକ ଅଦ୍ଭୁତ ପରିବର୍ତ୍ତନ ଆସିବ । ଧନ ଓ ଜୀବନ ସୁରକ୍ଷିତ ହୋଇପାରିବ । ଅର୍ଥ, ଲୋଲୁପ, ସ୍ୱାର୍ଥାନ୍ୱେଷୀ ପୂଜକଗୋଷ୍ଠୀଙ୍କୁ ଉଚିତ୍ ଶିକ୍ଷା ମିଳି ପାରିବ । ସବୁ ସମସ୍ୟାର ସମାଧାନ ହୋଇପାରିବ ।

********

# ପ୍ରାକୃତିକ ବିପର୍ଯ୍ୟୟ ଦୈବୀ ପ୍ରକୋପ ନୁହେଁ

୨୦୧୩ ମସିହା ଜୁନ୍ ୧୪ ତାରିଖ ଦିନ ଉତ୍ତରାଞ୍ଚଳର ପାହାଡ ଅଞ୍ଚଳରେ ପ୍ରବଳ ବର୍ଷା ଯୋଗୁଁ ଭୀଷଣ କ୍ଷୟ କ୍ଷତି ହେବା ସହିତ ହଜାର ହଜାର ଲୋକଙ୍କ ପ୍ରାଣ ହାନୀ ଘଟିଛି। ମୃତ୍ୟୁ ସଂଖ୍ୟା ଏତେ ସମୟ ବିତି ଯାଇଥିଲେ ବି ସଠିକ୍ ଭାବେ ଆକଳନ କରାଯାଇ ପାରି ନାହିଁ। ସରକାରୀ ହିସାବ ଅନୁସାରେ ପ୍ରାୟ ଛଅ ହଜାର କୁହାଯାଇଥିଲେ ବି ପ୍ରତ୍ୟେକ୍ଷଦର୍ଶୀଙ୍କ ଅନୁସାରେ ଏହି ସଂଖ୍ୟା ଚାରିଗୁଣ ହୋଇପାରେ।

ଏହା ବି ସତକଥା ଯେ ଏହି ପ୍ରାକୃତିକ ବିପର୍ଯ୍ୟୟରେ ମୃତ୍ୟୁ ସଂଖ୍ୟା ଠିକ୍ ଭାବେ ଗଣନା କରିହେବ ନାହିଁ। କାରଣ ଏହା କେବଳ ସେହି ଅଞ୍ଚଳରେ ବାସିନ୍ଦାଙ୍କ ସଂଖ୍ୟା ନୁହେଁ। ଭାରତର ବିଭିନ୍ନ ପ୍ରଦେଶରୁ ଆସିଥିବା ଭକ୍ତମାନଙ୍କ ମଧ୍ୟ। ତେଣୁ ହିସାବ କିପରି ମିଳିବ ?

ପ୍ରାକୃତିକ ବିପର୍ଯ୍ୟୟ ଘଟିବା କିଛି ନୂଆ କଥା ନୁହେଁ। ଭୂମିକମ୍ପ, ସୁନାମି, ଆଗ୍ନେୟଗିରୀ ଉଦ୍‌ଗୀରଣ, ବାତ୍ୟା, ବନ୍ୟା ଓ ବିଜୁଳୀ ଚଡକ ଯୋଗୁଁ ପୃଥିବୀରେ ବିଭିନ୍ନ ସମୟରେ ବିଭିନ୍ନ ଯାଗାରେ ଅନେକ ଧନ ଓ ଜୀବନ କ୍ଷତି ହେଉଛି। ଏଗୁଡିକୁ ରୋକିବା ପାଇଁ ବର୍ତ୍ତମାନ ସୁଦ୍ଧା ମଣିଷର ବିଜ୍ଞାନ ଲବ୍‌ଧ କୌଣସି ଶକ୍ତି ଉଦ୍ଭାବନ ହୋଇ ପାରିନାହିଁ। ପ୍ରାକୃତିକ ବିପଦ ଆସିବାର କିଛି ସମୟ ପୂର୍ବରୁ ସୂଚନା ପାଇବା ଏବଂ ବିପର୍ଯ୍ୟୟ ପରେ ହୋଇଥିବା କ୍ଷତି ପୂରଣ କରିବା ପାଇଁ ବୈଜ୍ଞାନିକ ପଦ୍ଧତି ଗୁଡିକ ଖୁବ୍ ସାହାଯ୍ୟ କରୁଛି।

ଉପରୋକ୍ତ ଯେ କୌଣସି ପ୍ରକାର ବିପଦ ବେଳେ ସେହି ଅଞ୍ଚଳର ଅଧିବାସୀ କ୍ଷତିଗ୍ରସ୍ତ ହୋଇଥିଲେ, ସେମାନଙ୍କୁ ଚିହ୍ନଟ କରି ସାହାଯ୍ୟ କରିବା ପ୍ରଶାସନ ପାଇଁ ସହଜ ହୋଇଥାଏ।

ଉତ୍ତରାଞ୍ଚଳର ଭୟଙ୍କର ବନ୍ୟାରେ ମୃତ୍ୟୁବରଣ କରିଥିବା ଲୋକମାନଙ୍କ ସଂଖ୍ୟା ସ୍ଥାନୀୟ ଅଧିବାସୀଙ୍କ ଅପେକ୍ଷା ବହୁତ ବେଶୀ,

ସେଥିପାଇଁ ଏପରି ପ୍ରଶ୍ନ ଉଠୁଛି ଯେ ଉତ୍ତରାଞ୍ଚଳରେ ଏତେ ବେଶୀ ମଣିଷ ଜୀବନ ହରାଇଲେ କାହିଁକି ?

ଏହାର ଉତ୍ତର ଖୋଜିବା ପାଇଁ ବେଶୀ ମୁଣ୍ଡ ଖେଳାଇବା ବି ଆବଶ୍ୟକ ନାହିଁ । ସେଠାରେ ଥିବା ଚାରି ତୀର୍ଥ ସ୍ଥାନ କେଦାରନାଥ, ବଦ୍ରୀନାଥ, ଗଂଗୋତ୍ତରୀ ଏବଂ ଯମୁନୋତ୍ତରୀ ତୀର୍ଥସ୍ଥଳମାନଙ୍କର ବହୁଳ ପ୍ରଚାର ଫଳରେ ଶ୍ରାବଣ ମାସରେ ପ୍ରତିଦିନ ପ୍ରାୟ ୨୫ରୁ ୩୦ ହଜାର ଭକ୍ତ ପ୍ରତିଟି ସ୍ଥାନରେ ଜମା ହୁଅନ୍ତି । ତେଣୁ ଚାରି ସ୍ଥାନର ଜନସଂଖ୍ୟା ଏକ ଲକ୍ଷରୁ ଅଧିକ ହୋଇଥାଏ । ଜୁନ୍ ୧୪ ତାରିଖରେ ବି ସେତିକି ପରିମାଣର ଭକ୍ତ ସେହି ଅଞ୍ଚଳରେ ଜମା ହୋଇଥିବା ଅନୁମାନ କରାଯାଉଛି । ସବୁଠାରୁ ବେଶୀ କ୍ଷତି କେଦାରନାଥ ଧାମରେ ହୋଇଥିବାର ଖବର ମିଳୁଛି । ଏଠାରେ ମନ୍ଦିର ସମିତିର ଅଫିସ, ଭଣ୍ଡାରଗୃହ, ମନ୍ଦିରର ମୁଖ୍ୟଦ୍ୱାର ଆଦି ବନ୍ୟା ଜଳରେ ଭାସି ଯାଇଛି । ଗର୍ଭ ଗୃହରେ କାଦୁଅ ଭର୍ତ୍ତି ହୋଇଯାଇଛି । ସେଠାରେ ଥିବା ମନ୍ଦାକିନୀ ନଦୀର ଜଳ ପ୍ରବାହରେ ରାମକାଡା, ସୋନପ୍ରୟାଗ ସଂପୂର୍ଣ୍ଣ ଭାବେ ନିଶ୍ଚିହ୍ନ ହୋଇଯାଇଛି । ଗୌରୀକୁଣ୍ଡ ନଷ୍ଟ ହୋଇଯାଇଛି । ସେଠାରେ ଅଗସ୍ତ୍ୟମୁନି ବଜାର ଏବଂ ରୁଦ୍ରପ୍ରୟାଗର ଅନେକ ଘର, ପୋଲ, ସଡକ ସବୁ କିଛି ଭାସି ଯାଇଛି ।

ଋଷିକେଶର ପରମାର୍ଥ ନିକେତନରୁ ନୀଳକଣ୍ଠେଶ୍ୱରଙ୍କ ପ୍ରତିମା ବି ଭାସି ଯାଇଛି ।

ବର୍ଷା ଦିନରେ ପାହାଡ ଅଞ୍ଚଳରେ ବର୍ଷା ଯୋଗୁଁ ଭୂସ୍ଖଳନ ହେବାଟା ଏକ ସାଧାରଣ କଥା । ଦ୍ୱିତୀୟରେ ପାଣିପାଗ ବିଭାଗ ତରଫରୁ ଉତ୍ତରାଞ୍ଚଳରେ ଦୁଇଦିନ ପୂର୍ବରୁ ପ୍ରବଳ ବର୍ଷା ହେବାର ସମ୍ଭାବନା ଥିବା କଥା ପ୍ରଶାସନ ଦ୍ୱାରା ଘୋଷଣା କରାଯାଇଥିଲା । କିନ୍ତୁ ଧର୍ମାନ୍ଧ ବ୍ୟକ୍ତିମାନଙ୍କର ମୂର୍ଖାମୀ ଯୋଗୁଁ ପ୍ରଥମେ ବର୍ଷା ଦିନେ ପାହାଡ ଅଞ୍ଚଳକୁ ଯିବା ବିପଦ ଅଛି, ଜାଣି ମଧ୍ୟ "ଭୋଳାନାଥ ଆମକୁ ରକ୍ଷା କରିପାରିବେ" ବୋଲି ବିଶ୍ୱାସ ରଖିବା ଓ

ଦ୍ୱିତୀୟରେ ପାଣିପାଗ ବିଭାଗର ପୂର୍ବ ସତର୍କ ସୂଚନାକୁ ଅବିଶ୍ୱାସ କରି ତୀର୍ଥ ଯାତ୍ରାରେ ଆଗେଇ ଯିବା ଫଳରେ ହିଁ ବହୁ ସଂଖ୍ୟାରେ ଜନହାନୀ ଘଟିଲା ।

ଧର୍ମାନ୍ଧ ଲୋକମାନଙ୍କର ବିଚିତ୍ର ବିଶ୍ୱାସକୁ ମାନିବାକୁ ପଡିବ । ଟିଭି ଗଣମାଧ୍ୟମରେ କେଦାରନାଥ ଅଞ୍ଚଳର ବିଭତ୍ସ ଦୃଶ୍ୟ ଦେଖି କେତେକ ଭକ୍ତ କହୁଛନ୍ତି- "ଏତେ ବଡ ବନ୍ୟାରେ ବି କେଦାରନାଥଙ୍କ ମୂର୍ତ୍ତିକୁ କିଛି ବି ହୋଇନାହିଁ, ଦେଖନ୍ତୁ ଯେଉଁମାନେ ସେଠାରୁ ସଂଯୋଗ ବଶତଃ ବଞ୍ଚି ଫେରି ଆସିଛନ୍ତି, ସେମାନେ କହୁଛନ୍ତି-"ମୃତ୍ୟୁ ଆମ ପଛରେ ଗୋଡେଇ ଥିଲା କିନ୍ତୁ ବାବା ଭୋଳାନାଥ ଆମକୁ ବଞ୍ଚେଇ ଦେଲେ ।" ସେମାନେ ହୁଏତ ଆସନ୍ତା ବର୍ଷ ଠିକ୍ ଏହି ସମୟରେ କେଦାରନାଥ ଯାଇ କୃତଜ୍ଞତା ଜଣେଇ ଆସିବା ପାଇଁ ମାନସିକ କରି ସାରିଥିବେ । ସେମାନଙ୍କୁ ଯଦି କେହି ପଚାରିବ ତୁମ ସାଙ୍ଗରେ ଯାଇଥିବା ଅନ୍ୟ ଲୋକମାନଙ୍କୁ ଠାକୁର କାହିଁକି ବଞ୍ଚେଇଲେ ନାହିଁ ? ସେମାନେ ସେହି ଭଳି ମନକୁ ଠେସ ଦେଲା ଭଳି ଗାଲୁ ଗପ ହିଁ କହିବେ- "ସବୁ ଠାକୁରଙ୍କ

ଇଚ୍ଛା । କାହାକୁ ମାରିବେ, କାହାକୁ ତାରିବେ, ସେ କଥା ସେ ହିଁ ଜାଣନ୍ତି । ଆମେ ଛାର ମଣିଷ କାହିଁକି ମୁଣ୍ଡ ପୂରେଇବୁ ?"

ସେହି ଭଦ୍ର ଲୋକମାନେ କିନ୍ତୁ ପାହାଡ ଓ ଜଙ୍ଗଲରେ ଫସି ଥିବା ବେଳେ ଠାକୁରଙ୍କୁ ଭୁଲିଯାଇ ପ୍ରାଣ ବିକଳରେ ଆର୍ମି, ଏୟାରଫୋର୍ସ ଓ ଅନ୍ୟାନ୍ୟ ସୁରକ୍ଷା କର୍ମଚାରୀ ମାନଙ୍କୁ ନିବେଦନ କରୁଥିଲେ- ଆମକୁ ବଞ୍ଚାଅ, ଆମକୁ ବଞ୍ଚାଅ । ସୁରକ୍ଷା କର୍ମଚାରୀ ଗଣ ନିଜ ଜୀବନକୁ ବାଜି ଲଗାଇ, ରାତି ଦିନ ଖାଇବା ପିଇବା ଭୁଲି, ସେହି ଅନ୍ଧବିଶ୍ୱାସି ଭକ୍ତମାନଙ୍କୁ ଉଦ୍ଧାର କରି ଆଣିଛନ୍ତି । ସେହି ମାନଙ୍କ ଉଦ୍ଧାର କାର୍ଯ୍ୟରେ ବ୍ୟସ୍ତ ଥିବା ବେଳେ ଏୟାରଫୋର୍ସର ଗୋଟିଏ ହେଲିକପ୍ଟର ଦୁର୍ଘଟଣାଗ୍ରସ୍ତ ହୋଇ କିଛି ସୁରକ୍ଷା କର୍ମଚାରୀ ସହୀଦ ହୋଇଗଲେ । ତଥାପି ଗାଲୁଆ ଭକ୍ତମାନେ ଗୁଣ ଗାଉଛନ୍ତି ତଥାକଥିତ ମହାଦେବଙ୍କର । ଅନ୍ୟ ପକ୍ଷରେ ପ୍ରଶାସନକୁ ମନ ଭରି ଗାଳି ଦେଉଛନ୍ତି, ଯେ

ଆମକୁ ସାହାଯ୍ୟ ଯୋଗେଇ ଦେଉ ନାହାନ୍ତି ? ଆମେ ସେମାନଙ୍କୁ ପଚାରିବାକୁ ଚାହୁଁଛୁ- କିହୋ ପ୍ରଶାସନ କଅଣ ତୁମମାନଙ୍କୁ ନିମନ୍ତ୍ରଣ କରିଥିଲା, ନା ତୁମମାନଙ୍କୁ ଆଦେଶ ଜାରି କରିଥିଲା ଏତେ ସଂଖ୍ୟାରେ ସେଠାକୁ ଯିବା ପାଇଁ ? ଯେଉଁମାନେ ତୁମକୁ ପ୍ରବର୍ତ୍ତାଇଥିଲେ, ଯେଉଁ ଠାକୁର ତୁମମାନଙ୍କୁ ଡକାଇଥିଲେ- "ଆସ, ମୋ ପାଖକୁ ଆସ ତୁମର ଅଶେଷ କଲ୍ୟାଣ କରିବି, ତୁମର ଧନଜୀବନକୁ ସୁରକ୍ଷା ଦେବି"। ସେହିମାନଙ୍କୁ ଗାଳି ଦେଉନାହିଁ କାହିଁକି ? ସହର ଓ ଗାଁରେ ବୁଲିବୁଲି ଚାରିଧାମର ମଧ୍ୟସ୍ଥି (ଦଲାଲ) ମାନେ ପ୍ରଚାର ପତ୍ର ବାଣ୍ଟି କହୁଥିଲେ- "ଚାରିଧାମ ଯାତ୍ରା କଲେ ଜୀବନ ସୁଧୁରି ଯିବ।" (ଜୀବନ ସୁଧୁରି ଯିବାର ଅର୍ଥ କଅଣ ଅକାଳ ମୃତ୍ୟୁ ବରଣ କରିବା ?) ସେହି ଦଲାଲମାନଙ୍କୁ କାହିଁକି କେହି ଦୋଷ ଦେଉ ନାହାନ୍ତି ?

ଅସଲ କଥା ହେଉଛି- ଲୋକମାନଙ୍କ ବିବେକ ଓ ବୁଦ୍ଧିକୁ ପଣ୍ଡା, ପୂଜାରୀମାନେ ସଂପୂର୍ଣ୍ଣ ଭାବେ କବଳିତ କରି ରଖିଛନ୍ତି। ଏଥିପାଇଁ ପ୍ରତ୍ୟେକ କଥାରେ 'ଭଗବାନଙ୍କ ଇଚ୍ଛା' ହିଁ ସମସ୍ତଙ୍କୁ ଦେଖାଯାଉଛି।

ଏହି ଘଟଣାର କିଛି ଦିନ ପରେ ଦ୍ୱାରକାର ଶଙ୍କରାଚାର୍ଯ୍ୟ ସ୍ୱରୂପାନନ୍ଦ ଗଣ ମାଧ୍ୟମକୁ କହିଲେ- "ଉତ୍ତରାଞ୍ଚଳ ସରକାର ଖୁବ୍ ଶୀଘ୍ର ମନ୍ଦିରକୁ ସଫାକରି ପୂଜା ଅର୍ଚ୍ଚନା ଆରମ୍ଭ କରିଦେବା ଉଚିତ୍।" କେଦାରନାଥ ମନ୍ଦିରରେ ଗତ ଜୁଲାଇ ଚାରି ତାରିଖରେ ମନ୍ଦିରର ମୁଖ୍ୟ ପୂଜାରୀ ରାୱଲ ଭୀମରାଓ ଲିଙ୍ଗମ୍ ଯଥାବିଧି ପୂଜା ଅର୍ଚ୍ଚନା କରି ମନ୍ଦିରର ମୁଖ୍ୟଦ୍ୱାର ଭକ୍ତମାନଙ୍କ ପାଇଁ ଖୋଲି ଦେଇଥିଲେ। ଶଙ୍କରାଚାର୍ଯ୍ୟ ଏହି ପୂଜାରେ ରହି ଯାଇଥିବା କିଛି ଦୋଷ ଯୋଗୁଁ ବିପଦ ଆସିଲା ବୋଲି ଟିପ୍ପଣି କରିଦେଲେ।

ରାୱଲ ଭୀମରାଓ ଏହି ଆକ୍ଷେପରେ ଉତ୍ତର ଦେଇ କହିଲେ- କେଦାରନାଥଙ୍କ ପୂଜା ପଦ୍ଧତି ସଂପର୍କରେ ଶଙ୍କରାଚାର୍ଯ୍ୟ କ'ଣ ଜାଣନ୍ତି ? ଉତ୍ତରାଞ୍ଚଳ ପ୍ରଶାସନ ଶଙ୍କରାଚାର୍ଯ୍ୟଙ୍କୁ କହିଲେ- ମନ୍ଦିର ଆଖପାଖରେ ଅସଂଖ୍ୟ ଶବ ମାଟି ପଥର ତଳେ ଦବି ରହିଛି। ସେଗୁଡିକ ପ୍ରଥମେ ସଫା

ନକରି ମନ୍ଦିର କାମ କରିବା ସମ୍ଭବ ନୁହେଁ। ଶଙ୍କରାଚାର୍ଯ୍ୟ କହିଲେ ମହାଦେବ ଶିବଙ୍କ ପାଇଁ ଶ୍ମଶାନ ଓ ଶବ, କିଛି ମାନେ ରଖୁନି। ବରଂ ଶିଘ୍ର ପୂଜା ଆରମ୍ଭ କରିଦେଲେ ଶିବଙ୍କ କୋପ ଶାନ୍ତି ହେବ।

ଆଉ ଜଣେ ରାଜନେତ୍ରୀ ସାଧ୍ୱୀ ଉମା ଭାରତୀ କହିଲେ- ଶ୍ରୀନଗର ଠାରେ ଧାରୀ ଦେବୀଙ୍କର ମୂର୍ତ୍ତିକୁ ସ୍ଥାନାନ୍ତରିତ କରିଥିବାରୁ ସେ କ୍ରୋଧ ହୋଇ ଉତ୍ତରାଞ୍ଚଳରେ ପ୍ରଳୟ ସୃଷ୍ଟି କରିଦେଲେ।

ଶଙ୍କରାଚାର୍ଯ୍ୟଙ୍କ ବିଚାର କେତେ ଅମାନବୀୟ ଓ ସଂବେଦନହୀନ ସେ କଥା ବୁଝିବାରେ କାହାରି ଅସୁବିଧା ରହିବା ଉଚିତ୍ ନୁହେଁ। ସେ ନିଜେ ସୁରକ୍ଷିତ ଏବଂ ଘର, ପରିବାରର ଦାୟିତ୍ୱରୁ ମୁକ୍ତି ଅଛନ୍ତି। ସେ କିପରି ବୁଝିପାରିବେ କୌଣସି ସ୍ୱାମୀ, ପିତା, ମାତା ଓ ସ୍ତ୍ରୀଙ୍କ ଅକାଳ ମୃତ୍ୟୁରେ ପରିବାର ଲୋକମାନଙ୍କ

କେତେ କ୍ଷତି ହୁଏ ?

ଉମା ଭାରତୀଙ୍କ କଥନରେ କୌଣସି ତର୍କସଂଗତ ତଥ୍ୟ ନାହିଁ। ଏହି ଭଳି ତର୍କ ଦେଉଥିବା ଲୋକର ମାନସିକ ଦେବାଳିଆ ପଣ ସ୍ପଷ୍ଟ ଭାବେ ଦେଖାଯାଏ। ପ୍ରଶ୍ନ ଉଠୁଛି- ଧାରୀ ଦେବୀଙ୍କୁ ଶ୍ରୀନଗରେ ସ୍ଥାନାନ୍ତରିତ କରାଗଲା, ସେ ସେଠାରେ କିଛି କ୍ଷତି ନକରି କେଦାରନାଥକୁ ଦୌଡି ଆସି ପ୍ରଳୟ କରିଦେଲେ କାହିଁକି ? ଦ୍ୱିତୀୟ ପ୍ରଶ୍ନ- ଧାରୀ ଦେବୀ କଅଣ କେଦାରନାଥ ଓ ବଦ୍ରିନାଥଙ୍କ ଅପେକ୍ଷା ବେଶୀ ଶକ୍ତିଶାଳୀ ? ଦେବୀ ନଷ୍ଟ କରୁଥିଲେ ଏବଂ ଦେବତା ଚୁପ୍‌ଚାପ୍ ବସି ତାଣ୍ଡବ ଦେଖୁଥିଲେ ? ଏହି ସମୟରେ ପ୍ରାୟ ସମସ୍ତ ଧର୍ମ ଗୁରୁମାନଙ୍କ ସ୍ୱରରେ ସ୍ୱର ମିଳାଇ ଗଣମାଧ୍ୟମ ବି ପ୍ରଚାର କରୁଛି ଯେ ଉତ୍ତରାଞ୍ଚଳର ଘଟଣା ପ୍ରାକୃତିକ ବିପର୍ଯ୍ୟୟ ନୁହେଁ, ଏହା ଏକ ଦୈବୀ ପ୍ରକୋପ।

ଆମେ ସଚେତନ ସୁଧି ପାଠକମାନଙ୍କୁ ବିନିତ ଅନୁରୋଧ କରିବୁ- ଆପଣ ଚିନ୍ତା କରି ଦେଖନ୍ତୁ କେଉଁଟା ସତ ?

********

# ଈଶ୍ୱର ସବୁବେଳେ ନିରବ ବିଜ୍ଞାନ ନୁହେଁ

ଏକ ଆଲେଖ୍ୟ 'ନିରବ ଈଶ୍ୱର ଓ ବିଜ୍ଞାନ' ପଢିବା ପରେ ଆମ ମନରେ କିଛି ପ୍ରତିକ୍ରିୟା ସୃଷ୍ଟି ହୋଇଛି । ଲେଖକଙ୍କର ଈଶ୍ୱର ବିଶ୍ୱାସକୁ ଆମେ ସମ୍ମାନର ସହ ସ୍ୱାଗତ କରୁଛୁ । ଲେଖକଙ୍କ ମତ ଅନୁସାରେ, ସୃଷ୍ଟିର ସବୁକିଛି ଈଶ୍ୱର କରିଛନ୍ତି । ସମସ୍ତ ମୌଳିକ ବସ୍ତୁ ଈଶ୍ୱରଙ୍କ ଦ୍ୱାରା ସୃଷ୍ଟି । ଅର୍ଥାତ୍ 'କରି କରାଉଥାଏ ମୁହିଁ । ମୋ ବିନୁ ଅନ୍ୟଗତି ନାହିଁ' । ଏହାକୁ ଯଦି ଆମେ ସତ୍ୟ ବୋଲି ମାନିବା, ତେବେ ପ୍ରଶ୍ନ ଉଠୁଛି- ମଣିଷର କର୍ମକୁ ଆମେ ଗୁରୁତ୍ୱ ଦେବା କାହିଁକି ? ତା'ର ଦୋଷଗୁଣକୁ ନିନ୍ଦା କରିବା କାହିଁକି ? କାରଣ, ଦୁନିଆର ସମସ୍ତ ଭଲ ଓ ମନ୍ଦ କର୍ମ ତ ଈଶ୍ୱରଙ୍କ ଦ୍ୱାରା ପୂର୍ବ ନିର୍ଦ୍ଧାରିତ ସତ୍ୟ । ଈଶ୍ୱରଙ୍କ ଇଚ୍ଛା ବିନା ଗଛର ପତ୍ର ବି ହଲିବ ନାହିଁ ବୋଲି ଦାବି କରାଯାଏ । ଏମିତି ବି କୁହାଯାଏ- "ବିଧିର୍ ବିଧାନ ବା ଭାଗ୍ୟ ଲିଖନ, କେ କରିବ ଆନ ? ଅର୍ଥାତ୍ ଯାହାର ଭାଗ୍ୟରେ ହତ୍ୟାକାରୀ ହେବା ଲେଖାଥିବ, ସେ ତ ସେୟା ହିଁ କରିବାକୁ ବାଧ୍ୟ ହେବ । ସେ ଯଦି ହତ୍ୟା ନକରେ ତେବେ ବିଧିର ବିଧାନ ପାଳନ ହେବ କେମିତି ? ଏହି ପ୍ରଶ୍ନଗୁଡିକର ସିଧାସଳଖ ଉତ୍ତର କାହାରି ପାଖରେ ନାହିଁ । ସମସ୍ତେ ଗୋଳମାଳିଆ ଉତ୍ତର ଦେଇ ମୂଳ ପ୍ରଶ୍ନକୁ ଏଡେଇ ଯିବାକୁ ଚେଷ୍ଟା କରିଥା'ନ୍ତି । ଧର୍ମଶାସ୍ତ୍ରମାନଙ୍କରେ ବି ସେହି ଭଳି କଥା ଲେଖା ଯାଇଛି । ପ୍ରଥମେ ଈଶ୍ୱର ଦୁଇ ପ୍ରକାର ଭଲ ଓ ମନ୍ଦ ପ୍ରାଣୀ ସୃଷ୍ଟି କରନ୍ତି, ପରେ ଦୁଷ୍ଟ ପ୍ରାଣୀଙ୍କୁ ଦୁନିଆରୁ ହଟେଇବା ପାଇଁ ନିଜେ ଅବତାର ଗ୍ରହଣ କରି ହତ୍ୟା କରନ୍ତି ।

ଏଇଠି ପ୍ରଶ୍ନ ଉଠୁଛି-ଈଶ୍ୱର କେବଳ ଭଲ ପ୍ରକାରର ପ୍ରାଣୀ କାହିଁକି ସୃଷ୍ଟି କରୁନାହାନ୍ତି ? କିମ୍ବା ଦୁଷ୍ଟ ପ୍ରାଣୀଙ୍କୁ ସୃଷ୍ଟି କରୁଥିବା ଈଶ୍ୱର ଭଳି ଅନ୍ୟ କୌଣସି ଶକ୍ତି ଅଛି କି ?

ଲେଖକ ଆପତ୍ତି ଦର୍ଶାଇଛନ୍ତି- 'କିଏ ଈଶ୍ୱରଙ୍କୁ ମାନୁ ନମାନୁ ଆମର କିଛି କହିବାର ନାହିଁ, କିନ୍ତୁ ଈଶ୍ୱର ନାହାନ୍ତି ବୋଲି ଅନ୍ୟମାନଙ୍କୁ ବାଧ୍ୟ

କରିପାରିବା ନାହିଁ । ଏହା ସତ୍ୟ- କିନ୍ତୁ ଆସ୍ତିକମାନେ ଜନସାଧାରଣଙ୍କୁ ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱୀକାର କରିବା ପାଇଁ ବିଭିନ୍ନ ଆଳରେ ବାଧ୍ୟ କରିଥା'ନ୍ତି କାହିଁକି ? ଈଶ୍ୱର ଯେହେତୁ ନିରବ ତେଣୁ ତାଙ୍କ ଅସ୍ତିତ୍ୱକୁ ପ୍ରମାଣ କରିବା ପାଇଁ ମଣିଷମାନେ ହିଁ ଆବହମାନ କାଳରୁ ବିଭିନ୍ନ ଧର୍ମୀୟ କର୍ମକାଣ୍ଡ ଦ୍ୱାରା, ମନ୍ଦିର ନିର୍ମାଣ ଦ୍ୱାରା, ଧର୍ମଶାସ୍ତ୍ର ରଚନା ଦ୍ୱାରା, ଧର୍ମଶାସ୍ତ୍ରରୁ ଉଦ୍ଧୃତ କରି ଧର୍ମଗୁରୁମାନଙ୍କ ପ୍ରବଚନ ଦ୍ୱାରା ଏବଂ ଆଜିର ବୈଦ୍ୟୁତିକ ଗଣମାଧ୍ୟମକୁ ବ୍ୟବହାର କରି ଈଶ୍ୱରବାଦୀମାନେ ଜୋରସୋରରେ ପ୍ରଚାର କରୁଛନ୍ତି ।

ଅନ୍ୟ ଧର୍ମକୁ ବାଦ ଦେଇ ଆମେ ଆମର ହିନ୍ଦୁ ଧର୍ମରେ ମାନ୍ୟତା ପ୍ରାପ୍ତ ୩୩କୋଟି ଦେବୀଦେବତାଙ୍କ ଭକ୍ତମାନଙ୍କ ଆଚରଣ ଓ ଉଚ୍ଚାରଣ ଭିତରେ ରହୁଥିବା ବ୍ୟବଧାନକୁ ଦେଖି, ଏହି କଥାର ସତ୍ୟତାକୁ ବୁଝି ପାରିବା । ଯିଏ ଯେଉଁ ଦେବୀ, ଦେବତାଙ୍କୁ ବିଶ୍ୱାସ କରୁଛି, ସେ ଅନ୍ୟ ଦେବୀ, ଦେବତାଙ୍କୁ ନ୍ୟୁନ ଦୃଷ୍ଟିରେ ଦେଖୁଛି । ଯିଏ ଯେଉଁ ଧର୍ମଗୁରୁଙ୍କୁ ମାନୁଛି, ସେ ଅନ୍ୟ ଧର୍ମଗୁରୁଙ୍କୁ ଠକ ଓ ଭଣ୍ଡ କହି ତାଚ୍ଛଲ୍ୟ କରୁଛି । ଗତବର୍ଷ ଶଙ୍କରାଚାର୍ଯ୍ୟ ସ୍ୱରୂପାନନ୍ଦ ଘୋଷଣା କରିଦେଲେ- ଶିରିଡି ସାଇବାବା କୌଣସି ଗୁଣରେ ଭଗବାନ ନୁହନ୍ତି, ତେଣୁ ତାଙ୍କୁ ପୂଜା କରିବା ଅନୁଚିତ୍ । ଏହାର ପ୍ରତିବାଦ କରି ଲକ୍ଷଲକ୍ଷ ସାଇଭକ୍ତ ଶଙ୍କରାଚାର୍ଯ୍ୟଙ୍କୁ ହିଁ ଭଣ୍ଡ ଧର୍ମଗୁରୁ ବୋଲି ପ୍ରଚାର କରିଦେଲେ । ଏହି ପରିସ୍ଥିତିରେ ସାଧାରଣ ମଣିଷଙ୍କ ମନରେ ଦ୍ୱନ୍ଦ୍ୱ ସୃଷ୍ଟି ହେବା ସ୍ୱାଭାବିକ। କିଏ ସତ, କିଏ ମିଛ ?

ବିଜ୍ଞାନ ସମ୍ପର୍କରେ ଲେଖକଙ୍କ ମତ ଆଦୌ ତର୍କ ସଙ୍ଗତ ନୁହେଁ । ସେ କହିଛନ୍ତି- ବିଜ୍ଞାନ କ'ଣ ମଣିଷକୁ ଅମର କରିଦେଇ ପାରିବ ? ଏହାର ପ୍ରତିପ୍ରଶ୍ନ ହେଉଛି- ବିଜ୍ଞାନର ବିକାଶ ହେବା ଫଳରେ ପୂର୍ବକାଳ ଅପେକ୍ଷା ଆଜି ମଣିଷର ଜୀବନସ୍ତର କ'ଣ ସରଳ ଓ ସହଜବୋଧ ହୋଇନାହିଁ ? ଅନେକ ସାଙ୍ଘାତିକ ରୋଗରୁ ମୁକ୍ତ ହୋଇ ମଣିଷ କ'ଣ ଆଜି ଅକାଳ ମୃତ୍ୟୁକୁ ଏଡେଇ ଦେଇପାରି

ନାହିଁ ? ଆକସ୍ମିକ ଦୁର୍ଘଣାଜନିତ କ୍ଷତିଗ୍ରସ୍ତ ମଣିଷ ଶରୀରକୁ କ'ଣ ଆଧୁନିକ ଚିକିତ୍ସା ଦ୍ୱାରା ସୁସ୍ଥ କରାଯାଇ ପାରୁନାହିଁ ? ତା'ଛଡା ବିଜ୍ଞାନ ଜାଣେ ପ୍ରକୃତିର ସମସ୍ତ ବସ୍ତୁ ପରିବର୍ତ୍ତନଶୀଳ । ବିଶେଷକରି ଜୀବସତ୍ତାଧାରୀ ପ୍ରାଣୀଜଗତ ବୟସ ଅନୁସାରେ ବୃଦ୍ଧି ପାଇବ ଓ କ୍ଷୟ ବି ହେବ । ତେଣୁ ମଣିଷର ଅମର ହେବା ସମ୍ଭବ ନୁହେଁ । ଦ୍ୱିତୀୟ ପ୍ରଶ୍ନ ହେଉଛି- ମଣିଷ ଅମର ହେବାର ଆବଶ୍ୟକତା କ'ଣ ? ଯଦି ବା ଅମରତ୍ୱ ପ୍ରାପ୍ତ କରିବ କେଉଁ ବୟସ ସୀମାରେ ରହିବାକୁ ଚାହିଁବ ? ବାଲ୍ୟ, ଯୌବନ ଓ ପ୍ରୌଢ ତିନୋଟିଯାକ ଅବସ୍ଥାର ନିଜସ୍ୱ ମଜା ବି ଅଛି, ସମସ୍ୟା ବି ଅଛି ।

ଶେଷରେ ଲେଖକ ଆକ୍ଷେପ କରିଛନ୍ତି- 'ମଣିଷର ଖପୁରି ଓ ତା'ତଳେ ଥିବା ମସ୍ତିଷ୍କ, ଯାହାର ବୁଦ୍ଧି ବଳରେ ଏହା ଈଶ୍ୱରଙ୍କ ଉପସ୍ଥିତିକୁ ପ୍ରତ୍ୟାଖ୍ୟାନ କରୁଛି- ସେସବୁ ଈଶ୍ୱରଙ୍କ ଅବଦାନ' । ଏହା ଏକ ବିରୋଧାଭାସ ସୃଷ୍ଟି କରୁଛି । ପ୍ରଶ୍ନ ଉଠୁଛି- କିଏ କାହିଁକି ନିଜ ଗୋଡରେ ନିଜେ କୁରାଢି ମାରିବ ? ଈଶ୍ୱରଙ୍କୁ ଅସ୍ୱୀକାର କରୁଥିବା ବିଚାରଧାରା ମଣିଷ ମୁଣ୍ଡରେ ଈଶ୍ୱର ପୁରେଇବେ କାହିଁକି ? ଉପରୋକ୍ତ ସମସ୍ତ ପ୍ରକାର ସନ୍ଦେହ ଓ ପ୍ରଶ୍ନର ଉତ୍ତର ଦେବାକୁ ଈଶ୍ୱର ସବୁବେଳେ ନିରବ ରହିଛନ୍ତି । କେବଳ କେତେକ ମଣିଷ ହିଁ ଜଗତକୁ ମିଛମାୟା ଓ ସ୍ୱର୍ଗନର୍କକୁ ସତ ବୋଲି ଦାବି କରୁଛନ୍ତି । ମଣିଷ ଦ୍ୱାରା ବିକଶିତ ବିଜ୍ଞାନ ଦିନକୁ ଦିନ ଗବେଷଣା କରି ପ୍ରଶ୍ନଗୁଡିକର ତର୍କସଙ୍ଗତ ଓ ବିଜ୍ଞାନ ସମ୍ମତ ତଥ୍ୟ ଏବଂ ପ୍ରମାଣ ଦ୍ୱାରା ସତ୍ୟର ସନ୍ଧାନ କରିବାକୁ ଜନସାଧାରଣଙ୍କୁ ପ୍ରେରଣା ଦେଉଛି ।

********

# ନୈତିକତା ବନାମ ଧାର୍ମିକତା

ଅଧିକାଂଶ ଧାର୍ମିକ ମତବାଦୀମାନେ କୁହନ୍ତି- ସମାଜରେ ନୈତିକତା ରକ୍ଷା କରିବା ପାଇଁ ଈଶ୍ୱର ଓ ଧର୍ମର ଭୟ ରହିବା ନିହାତି ଆବଶ୍ୟକ । ପୁନର୍ଜନ୍ମର କର୍ମଫଳ ଓ ପାପକର୍ମ ଯୋଗୁ ନର୍କ ଦଣ୍ଡ ଭୟରେ ହିଁ ଲୋକମାନେ ଅପକର୍ମ କରିବାକୁ ଚାହାନ୍ତି ନାହିଁ ।

ଆମ ମନରେ ସନ୍ଦେହ ହେଉଛି ଏହା କ'ଣ ସତ ? ଆମେ ଚଳନ୍ତି, ସମାଜ ଓ ଇତିହାସକୁ ଦେଖିଲେ ବୁଝି ପାରିବା ଯେ ଈଶ୍ୱର କିମ୍ବା ନର୍କ ଦଣ୍ଡର ଭୟ ଯୋଗୁ କେହି ନୈତିକତା ରକ୍ଷା କରନ୍ତି ନାହିଁ ବରଂ ଅନୈତିକ କର୍ମ କରି ସାରି ଈଶ୍ୱରଙ୍କୁ ପୂଜା ଓ ପ୍ରାର୍ଥନା ଦ୍ୱାରା ସନ୍ତୁଷ୍ଟ କରି କ୍ଷମତା ପାଇଯିବାର ବାଟ ଖୋଜି ବୁଲନ୍ତି । ବିଭିନ୍ନ ପାପକର୍ମ ପାଇଁ ବିଭିନ୍ନ ପ୍ରକାର ପୂଜା ପଦ୍ଧତି ଶାସ୍ତ୍ରମାନଙ୍କରେ ଉଲ୍ଲେଖ ଅଛି । ଯଥା: ବ୍ରତ ଓ ଉପବାସ କରି, ବ୍ରାହ୍ମଣଙ୍କୁ ଦାନ କରି, ଦେବୀଙ୍କୁ ପଶୁ ପକ୍ଷୀ ଓ ନରବଳି ଦେଇ, ଧାର୍ମିକ ମାନ୍ୟତା ପ୍ରାପ୍ତ ନଦୀ ଓ ପୁଷ୍କରିଣୀରେ ବୁଡ ପକେଇ, ଦୁର୍ଗମ ଜଙ୍ଗଲ ଓ ପର୍ବତ ଅଞ୍ଚଳରେ ସ୍ଥାପିତ ଦେବୀ, ଦେବତାଙ୍କ ଦର୍ଶନ କରି ନିଜକୁ ପାପ ମୁକ୍ତ କରିବାର ଆତ୍ମ ସନ୍ତୁଷ୍ଟି ପାଇ ଯାଆନ୍ତି । ଅର୍ଥାତ ଈଶ୍ୱର ଏହି ଜନ୍ମରେ ଆଉ ଦଣ୍ଡ ଦେବେ ନାହିଁ । କିମ୍ବା ମୃତ୍ୟୁ ପରେ ବି ନର୍କ ଭୋଗ କରିବାକୁ ପଡିବ ନାହିଁ । ଆଉ ଚିନ୍ତା ରହିଲା କେଉଁଠି ?

ଆମେ ଦେଖିବା ପ୍ରକୃତରେ ଯଦି ଦେବୀ ଦେବତାଙ୍କ ଭୟ ଯୋଗୁ ନୈତିକତା ରକ୍ଷା ହୋଇପାରୁଥାନ୍ତା, ତେବେ ସମସ୍ତ ଲୁଣ୍ଠନକାରୀ, ହତ୍ୟାକାରୀ ଅପରାଧୀମାନେ ବି ସେମାନଙ୍କୁ ପୂଜା କରୁଛନ୍ତି କାହିଁକି ? ସମାଜରେ ବି ଆମେ ଦେଖୁଁ ଯିଏ ବେଶୀ ଅତ୍ୟାଚାରୀ, ଛଳ କପଟ କରି ଅଜସ୍ର ଧନ ଓ ପ୍ରତିପତ୍ତି ହାସଲ କରୁଛି, ସେ ହିଁ ବେଶୀ ଦାନ, ଦକ୍ଷିଣା ଦେଇ ଯଜ୍ଞ, ପୂଜା ଓ ପାଠ କରୁଛି । ଯଦି ଈଶ୍ୱରଙ୍କ ଭୟରେ ଲୋକମାନେ ନୈତିକ ହେବା ଉଚିତ

ତେବେ ଅପରାଧୀ ମାନେ ଅପରାଧ ତ୍ୟାଗ କରି ଭଦ୍ର ହୋଇ ଯାଉନାହାନ୍ତି କାହିଁକି ? ଏଥିରୁ ପ୍ରମାଣିତ ହେଉଛି ପାପ କଲେ ଅର୍ଥଦାନ ଭଳି କାଳ୍ପନିକ ଦଣ୍ଡ ବ୍ୟବସ୍ଥାକୁ ଧର୍ମଗୁରୁମାନେ କେବଳ ନିଜର ସ୍ୱାର୍ଥସିଦ୍ଧି ପାଇଁ ଏତେ ବେଶୀ ଗୁରୁତ୍ୱ ଦେଇ ରଖିଛନ୍ତି । ମଜା କଥା ହେଉଛି- ଧର୍ମ ନାମରେ ନୈତିକତାର ପାଠ ପଢାଉଥିବା ଅନେକ ତଥାକଥିତ ଧର୍ମଗୁରୁ ଅନୈତିକ କର୍ମ ଯୋଗୁ ସମାଜରେ ନିନ୍ଦିତ ଓ ଆଇନ୍ ହାତରେ ଧରାପଡି ଜେଲଦଣ୍ଡ ଭୋଗ କରୁଛନ୍ତି । ହୁଏତ ଯଦି ଈଶ୍ୱରଙ୍କ ଦ୍ୱାରା କ୍ଷମାଦାନ କିମ୍ବା ଦାନ, ଦକ୍ଷିଣା ଦ୍ୱାରା ପାପମୁକ୍ତ ହେବାର ଆଶ୍ୱାସନା ପ୍ରଚାର ହୋଇନଥାନ୍ତା । ତାହେଲେ ନିଶ୍ଚିତ ଭାବେ ଲୋକମାନେ ଅନୈତିକ କର୍ମ ଯୋଗୁ ନିଜ ବିବେକ ଦ୍ୱାରା ଅପରାଧବୋଧ ଅନୁଭବ କରୁଥାନ୍ତେ । ଦ୍ୱିତୀୟରେ ନିଜ ପରିବାର ଏବଂ ସମାଜ ଲୋକମାନଙ୍କ ଦ୍ୱାରା ତିରସ୍କୃତ ଓ ଉପେକ୍ଷିତ ହେବାର ଭୟରେ ନିଜକୁ ସଂଯତ କରିବାକୁ ବେଶୀ ଚେଷ୍ଟା କରୁଥାନ୍ତେ ।

ପୃଥିବୀରେ ବିଜ୍ଞାନର ପ୍ରଗତି ଯୋଗୁ ଦିନକୁ ଦିନ ମୃତ୍ୟୁହାର କମିଯିବା ଦ୍ୱାରା ଜନସଂଖ୍ୟା ବୃଦ୍ଧି ପାଉଛି । ସେହି ଅନୁପାତରେ ସମସ୍ୟା ବି ବୃଦ୍ଧି ପାଉଛି । ଦୁନିଆରେ ପ୍ରତ୍ୟେକ ଦେଶରେ ଆର୍ଥିକ, ସାମାଜିକ, ରାଜନୈତିକ ଓ ବିଶେଷ କରି ଧାର୍ମିକ ଅସହିଷ୍ଣୁତା କାରଣରୁ ବିଭିନ୍ନ ପ୍ରକାର ଭ୍ରଷ୍ଟାଚାର, ଅତ୍ୟାଚାର, ଶୋଷଣ ଓ ହିଂସା ବଢିଚାଲିଛି । ଉପରୋକ୍ତ ତିନିଗୋଟି ଆର୍ଥିକ, ସାମାଜିକ ଓ ରାଜନୈତିକ କାରଣ ଗୁଡିକର ନିରାକରଣ ସଂପୂର୍ଣ୍ଣ ଭାବେ ନହେଲେ ବି କେତେକାଂଶରେ ସମ୍ଭବ ହୋଇପାରୁଛି । କିନ୍ତୁ ଧାର୍ମିକ କାରଣରୁ ସୃଷ୍ଟି ହେଉଥିବା ଅତ୍ୟାଚାର, ଶୋଷଣ ଓ ହିଂସାକୁ ରୋକିବା ପାଇଁ କୌଣସି ଉପାୟ ମିଳୁନାହିଁ । ଗୋଟିଏ ଧର୍ମକୁ ମାନୁଥିବା ଲୋକମାନେ, ଅନ୍ୟ ଧର୍ମାବଲମ୍ବୀ ମାନଙ୍କୁ ଆଦୌ ସହ୍ୟ କରି ପାରୁନାହାନ୍ତି । ବଡ ଧର୍ମ ଓ ଛୋଟ ଧର୍ମର ମାନ୍ୟତା ହେଉଛି କେଉଁ ଧର୍ମର ସମର୍ଥକ କେତେ ? କାହାର ଠାକୁର କେତେ ଶକ୍ତିଶାଳୀ ପ୍ରମାଣ୍‌କରିବା ସମ୍ଭବ ନୁହେଁ, ତେଣୁ ଭକ୍ତଙ୍କ ସଂଖ୍ୟା ଦେଖି ବଡ ବା ସାନ

ଠାକୁରଙ୍କ ନିର୍ଣ୍ଣୟ ହୁଏ । ନିଜର ଅସ୍ତିତ୍ୱ ଓ ଶ୍ରେଷ୍ଠତା ପ୍ରତିପାଦନ ପାଇଁ ଧର୍ମାବଲମ୍ବୀଙ୍କ ଭିତରେ ପ୍ରତିସ୍ପର୍ଦ୍ଧା ଲାଗି ରହିଛି । ସେଭଳି ପରିସ୍ଥିତିରେ ନୈତିକତା ରହିବ କେଉଁଠି ?

ସମାଜର ଅନେକ ପ୍ରତିଷ୍ଠିତ ଉଚ୍ଚଶିକ୍ଷିତ ଡାକ୍ତର, ଇଞ୍ଜିନିୟର, ପ୍ରଶାସନିକ ଅଧିକାରୀ, ଅଧ୍ୟାପକ ଏବଂ ନେତା ଶ୍ରେଣୀର ଲୋକମାନେ ସମାଜରେ ବୃଦ୍ଧି ପାଉଥିବା ଅବ୍ୟବସ୍ଥା ପ୍ରତି କ୍ଷୋଭ ପ୍ରକାଶ କରି ଏକ ଆତ୍ମପ୍ରବଞ୍ଚନା ମୂଳକ ବକ୍ତବ୍ୟ ଦେଇଥାନ୍ତି । ତାହା ହେଲା 'ଆଧ୍ୟାତ୍ମିକ ଚେତନା ଅଭାବରୁ ସମାଜରେ ନୈତିକ ପତନ ଘଟୁଛି ।' ଏହାର ଅର୍ଥ ନୈତିକତା ସ୍ଥାପନ କରିବା ଉପାୟ ଆମ ପାଖରେ ନାହିଁ । ଦୁଇ ହାତ ଯୋଡି, ଆକାଶକୁ ଚାହିଁ ପ୍ରାର୍ଥନା କର- କାଳେ କୌଣସି ଅବତାର ପୁରୁଷ ଧରାଧାମକୁ ଓହ୍ଲାଇ ଆସି ସବୁ ସମସ୍ୟାର ସମାଧାନ କରିଦେବେ । କାରଣ ମଣିଷ ଭିତରେ ଆଧ୍ୟାତ୍ମିକ ଚେତନା ଜାଗ୍ରତ କରିବା ପାଇଁ ଯେଉଁ ତଥାକଥିତ ଧର୍ମ ଗୁରୁମାନେ ଠିକା ନେଉଛନ୍ତି, ସେହିମାନେ ବର୍ତ୍ତମାନ ପଥଭ୍ରଷ୍ଟ । ମୋହ ମାୟା ତ୍ୟାଗ ପାଇଁ ଉଦ୍ଧତ ସ୍ୱରରେ ପ୍ରବଚନ ଦେଉଥିବା ଆଧ୍ୟାତ୍ମିକ ଗୁରୁମାନେ ଆଜି ସବୁଠୁଁ ବେଶୀ ମୋହମାୟାଗ୍ରସ୍ତ । ହୁଏତ ସେମାନେ ବୁଝି ସାରିଛନ୍ତି ଯେ, ଆଧ୍ୟାତ୍ମିକ ନାମକ କୌଣସି ଶକ୍ତି ନାହିଁ ଯାହାଦ୍ୱାରା ମଣିଷର କୁପ୍ରବୃତ୍ତିକୁ ନିୟନ୍ତ୍ରଣ କରିପାରିବ । ଦ୍ୱିତୀୟତଃ ସମାଜରେ ଶୃଙ୍ଖଳା ରକ୍ଷା କରିବା ପାଇଁ ଆଇନ୍ ବା କାନୁନକୁ ବାଧ୍ୟତା ମୂଳକ ଭାବେ ଲାଗୁ କରୁଥିବା ଅଦାଲତ ଓ ପୋଲିସ୍ ବି ଆଧ୍ୟାତ୍ମିକ ନୀତି ନିୟମକୁ ଲାଗୁ କରି ପାରିବନି । ତେଣୁ ସହଜ ରାସ୍ତା ହେଉଛି -ଉପରବାଲା ଉପରେ ସବୁ କିଛି ଛାଡି ଦେଇ ପରସ୍ପରକୁ ସମାଲୋଚନା କରି ମନକୁ ସାନ୍ତ୍ୱନା ଦେଉଥାଅ ।

ସମସ୍ତେ ନହେଲେ ବି ବୁଦ୍ଧିଜୀବୀ ଗୋଷ୍ଠୀ ଯଦି ମୁକ୍ତ ମନରେ ସ୍ୱୀକାର କରନ୍ତେ କି କେବଳ ଧର୍ମ କିମ୍ବା ଆଧ୍ୟାତ୍ମିକ ଚେତନା ଯୋଗୁଁ ସମାଜରେ ନୈତିକତା ବଢୁନି ବରଂ ଧର୍ମର ସୁରକ୍ଷା କବଚ ଅନୈତିକତା ମିଳିଯାଉଛି ଏବଂ ଧର୍ମର ଆବରଣ ତଳେ ଅନୈତିକତାକୁ ସାମାଜିକ ପ୍ରତିଷ୍ଠା ବି ମିଳିପାରୁଛି

ତେବେ ସେମାନଙ୍କୁ ଅନୁସରଣ କରି ସାଧାରଣ ଜନତା ବି ନୈତିକତାର ପ୍ରକୃତ ଅର୍ଥ ବୁଝିପାରନ୍ତେ ।

ସାଧାରଣତଃ ସମାଜରେ ନିଶା ସେବନ, ଯୌନ ବ୍ୟଭିଚାର, ହତ୍ୟା ଆଦି କର୍ମକୁ ଅନୈତିକ ଓ ଅପରାଧ ବୋଲି ମାନୁଛନ୍ତି କିନ୍ତୁ ଏହି ସମସ୍ତ କର୍ମଯୋଗ ସାଧନା, ତନ୍ତ୍ର ସାଧନା, ଦେବଦାସୀ ପ୍ରଥା, ଯଜ୍ଞରେ ବଳି ଦେବା ଆଦି ଧର୍ମ ନାମରେ ଖୋଲାଖୋଲି ଭାବେ ପାଇପାରୁଛି । ଏହିଭଳି ଅପକର୍ମ କରୁଥିବା ସାଧୁ, ସନ୍ୟାସୀ ବାବା ଆଦି ଧର୍ମଗୁରୁମାନେ ସମାଜରେ ପୂଜା ବି ପାଉଛନ୍ତି ।

ଆଜିର ସଭ୍ୟ ସମାଜରେ ଅନୈତିକ କର୍ମ କରୁଥିବା ଅପରାଧୀ ଦାନ, ଦକ୍ଷିଣା ଦେଇ ପୂଜା, ପ୍ରାର୍ଥନା କରି ଧର୍ମ ଅଦାଲତରେ ନିଜକୁ ଯେତେ ନିର୍ଦ୍ଦୋଷ ବୋଲି ଆତ୍ମ ସନ୍ତୋଷ ପାଉଥିଲେ ବି ସମାଜର ଗଠିତ ଅଦାଲତରେ ସେ ନିଶ୍ଚିତ ଭାବେ ଉପଯୁକ୍ତ ଦଣ୍ଡ ପାଉଛି । ସେଥିପାଇଁ ଆଜିର ମଣିଷ ଧାର୍ମିକ ହେଉ କି ନହେଉ ବାଧ୍ୟ ହୋଇ ନୈତିକତା ବାଟରେ ଚାଲୁଛି । ବର୍ଦ୍ଧିତ ଜନସଂଖ୍ୟା ତୁଳନାରେ ଅପରାଧୀଙ୍କ ସଂଖ୍ୟା ବହୁତ କମ୍ । ତା'ନହେଲେ ଗାଁ ହେଉ କି ସହରରେ ଆମେ କେହି ବି ସୁରକ୍ଷିତ ଜୀବନ ଅତିବାହିତ କରି ପାରୁନଥାନ୍ତେ । ମଣିଷ ସମାଜରେ ସମ୍ପୂର୍ଣ୍ଣ ଭାବେ ନୈତିକତା ସ୍ଥାପନ ହେବା ସମ୍ଭବ ନୁହେଁ । ପୁରୁଣା କାଳରେ ନଥିଲା ଏବଂ ଆଜି ବି ନାହିଁ । ଅସାମାଜିକ ଓ ଦୁଷ୍ଟ ପ୍ରବୃତ୍ତିର ମଣିଷ ସବୁବେଳେ ରହିବେ । କେବଳ ସତର୍କ ଦୃଷ୍ଟିକୋଣ ହିଁ ନୈତିକତାକୁ ନିୟନ୍ତ୍ରଣ କରିପାରିବ ।

********

# ବିଭୂତିର ମାୟା

ଯେକୌଣସି ଦହନଶୀଳ ବସ୍ତୁ ସମ୍ପୂର୍ଣ୍ଣଭାବେ ଜଳିଗଲା ପରେ ଅବଶିଷ୍ଟ ରହିଯାଉଥିବା ଅଂଶକୁ ସାଧାରଣ ଭାଷାରେ ପାଉଁଶ ବା ଭସ୍ମ କୁହାଯାଏ। ସାଧୁ, ସନ୍ନ୍ୟାସୀ ଆଦି ଆଧ୍ୟାତ୍ମିକ ଗୁରୁମାନଙ୍କ ଭାଷାରେ ବିଭୂତି କୁହାଯାଏ। ମୋର ଜଣେ ସାଇବାବା ଭକ୍ତ ବନ୍ଧୁ କହିଲେ ବିଭୂତିର ଏକ ଚମତ୍କାରୀ ଶକ୍ତି ଅଛି। ଯଦି କୌଣସି ସିଦ୍ଧ ପୁରୁଷ ତାଙ୍କ ପବିତ୍ର ହସ୍ତରେ ବିଭୂତି ପ୍ରଦାନ କରନ୍ତି, ତେବେ ଭକ୍ତମାନଙ୍କ ଅଶେଷ ମଙ୍ଗଳ ସାଧନ ହୋଇଥାଏ। ଏପରିକି ଅସାଧ୍ୟ ରୋଗ ମଧ୍ୟ ଭଲ ହୋଇଯାଏ। ବନ୍ଧୁଙ୍କ ଏହି ମନ୍ତବ୍ୟଟି ଶୁଣି ଗତ ୨୦୧୧ ମସିହା ଏପ୍ରିଲ୍ ୨୫ତାରିଖରେ ମୃତ୍ୟୁବରଣ କରିଥିବା ଚମତ୍କାରୀ ସତ୍ୟସାଇବାବା ନାମରେ ବିଖ୍ୟାତ ସତ୍ୟନାରାୟଣ ରାଜୁଙ୍କ କାହାଣୀ ମନେପଡିଗଲା।

ବିଭୂତି ଏକ ଚମତ୍କାରୀ ଔଷଧ କିମ୍ବା ଆଶୀର୍ବାଦ ରୂପେ କେହି କାହାକୁ ଦେଇଥିବା କଥା ବେଦ କିମ୍ବା ଉପନିଷଦରେ ଦେଖିବାକୁ ମିଳେ ନାହିଁ। ଏପରିକି ରାମାୟଣ, ମହାଭାରତ ଓ ଗୀତାରେ ବି ବିଭୂତିର ମହତ୍ତ୍ୱ କେଉଁଠି ପ୍ରତିପାଦନ କରାଯାଇନାହିଁ। ତେଣୁ ଅନୁମାନ କରାଯାଇପାରେ ଯେ, ଯେଉଁ ସମୟରେ ସାଧୁ, ସନ୍ନ୍ୟାସୀ, ମୁନି ଓ ଋଷିମାନେ ଲୋକାଳୟରୁ ଦୂରରେ ଘନ ଜଙ୍ଗଲ ଭିତରେ ତପସ୍ୟା ବା ସାଧନା କରୁଥିଲେ, ସେମାନେ ସେଠାରେ ଅଗ୍ନିର ପ୍ରୟୋଗ କରୁଥିଲେ। ଜଙ୍ଗଲରେ କାଠର ଅଭାବ ତ ନଥିଲା, ତେଣୁ ରାତିଦିନ ଧୂନି ଜଳେଇ ରଖୁଥିଲେ। ଧୂନି ଚାରିପାଖରେ ବସି ସେମାନେ ସାଧନା ବା ତପ କରୁଥିଲେ। ଧୂନିରୁ ବାହାରୁଥିବା ଶୁଭ୍ର ଭସ୍ମ ଅତି ପବିତ୍ର ବୋଲି ସେମାନେ ବିଶ୍ୱାସ କରୁଥିଲେ। କାରଣ, ଅଗ୍ନିକୁଣ୍ଡରେ ମନ୍ତ୍ର ଉଚ୍ଚାରଣ ପୂର୍ବକ ଆହୁତି ଦିଆଯାଇଥାଏ। ସେହି ବିଶ୍ୱାସ ଓ ପ୍ରଚାର ଫଳରେ ଭସ୍ମର ପ୍ରଚଳ ବୃଦ୍ଧି

ପାଇଲା । ଯୋଗୀମାନେ ନିଜ ମଥାରେ, ମୁହଁରେ ଏବଂ ସମ୍ପୂର୍ଣ୍ଣ ଶରୀରରେ ଭସ୍ମଲେପନ କରୁଥିବା ଦେଖାଯାଏ । ସାଧାରଣ ଲୋକମାନଙ୍କୁ ଆଶୀର୍ବାଦ ସହିତ ଔଷଧ ରୂପେ ଯୋଗୀମାନେ ବିଭୂତି ଦେବା ଆରମ୍ଭ କରିଦେଲେ । ଲୋକମାନଙ୍କ ଭିତରେ ପ୍ରଚାର ହେଲା ଯେ, ଯିଏ ରୁଦ୍ରାକ୍ଷ ଭସ୍ମ ଧାରଣ କରିବ ତାକୁ ଯମଦୂତମାନେ ବି ଭୟ କରିବେ । ଏହା ଉପରେ ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଟିପ୍ପଣୀ କଲେ- ଯଦି ରୁଦ୍ରାକ୍ଷ ଭସ୍ମ ଧାରଣ କଲେ ଯମଦୂତ ଭୟ କରନ୍ତି, ତେବେ ସମାଜର ସୈନିକ ଓ ପୋଲିସ ବି ଭୟ କରୁଥିବେ । ରୁଦ୍ରାକ୍ଷ ଭସ୍ମ ଧାରଣ କଲେ ଯଦି କୁକୁର, ବାଘ, ସିଂହ, ସର୍ପ, ବିଛା ଓ ମଶା ବି ଭୟ ନକରି ମଣିଷକୁ ଦଂଶନ କରିପାରୁଛନ୍ତି, ତେବେ ଯମରାଜଙ୍କ ମହାଶକ୍ତିଶାଳୀ ଦୂତମାନେ କାହିଁକି ଭୟ କରିବେ ?

(ସତ୍ୟାର୍ଥ ପ୍ରକାଶ, ଏକାଦଶ ସମୁଲ୍ଲାସ)

ତଥାପି ଧର୍ମଭୀରୁ ଲୋକମାନଙ୍କ ଭିତରେ ବିଭୂତିର ଚମତ୍କାରୀ ଗୁଣ ସମ୍ପର୍କରେ ଏକ ଗଭୀର ବିଶ୍ୱାସ ରହିଛି । ବିଶେଷକରି ଯେଉଁଦିନରୁ ଆଧ୍ୟାତ୍ମିକ ଗୁରୁମାନେ ଶୂନ୍ୟରେ ହାତ ହଲେଇ ବିଭୂତି ପ୍ରକଟ କରି ବାଣ୍ଟିବା ଆରମ୍ଭ କଲେ, ଭକ୍ତମାନେ ବିଭୂତି ପ୍ରାପ୍ତ କରିବା ପାଇଁ ପାଗଳ ପ୍ରାୟେ ଆଶ୍ରମକୁ ଦୌଡି ଗଲେ । ସେହି ବିଭୂତି ଦ୍ୱାରା କାହାର କେଉଁ ରୋଗ ଦୂର ହୋଇଛି ବା କାହାର କେତେ ଉନ୍ନତି ହୋଇଛି, ସେକଥା ସେହିମାନେ ହିଁ କହିପାରିବେ ।

ଅସଲ କଥା ହେଉଛି- ହାତ ହଲେଇ ଶୂନ୍ୟରୁ ବସ୍ତୁ ବା ବିଭୂତି ପ୍ରକଟ କରିବା ହେଉଛି ଗୋଟିଏ କୌଶଳ ଓ ହାତ ସଫେଇ କଳା । ଯାଦୁଗରମାନେ ଏହି ବିଦ୍ୟା ପ୍ରଦର୍ଶନ କରି ଦର୍ଶକମାନଙ୍କ ମନୋରଞ୍ଜନ କରିଥାନ୍ତି କିନ୍ତୁ କେତେକ ଧୂର୍ତ୍ତ ଲୋକ ସେହି ବିଦ୍ୟା ପ୍ରଦର୍ଶନ କରି ଜନତାଙ୍କ ମାନସିକ ଓ ଆର୍ଥିକ ଶୋଷଣ କରିଥା'ନ୍ତି ।

ଅନେକ ଭକ୍ତ ପୂଜା ସାରି ନିଜ କପାଳରେ, ବେକରେ, ଦୁଇକାନରେ ବିଭୂତି ଲେପନ ପୂର୍ବକ କାର୍ଯ୍ୟାଳୟକୁ ଆସିଥା'ନ୍ତି । ସେମାନଙ୍କ ବ୍ୟବହାର ଓ କାର୍ଯ୍ୟପ୍ରଣାଳୀରେ ଯେତେ ଅବଗୁଣ ଥାଉ ପଛେ ସେମାନଙ୍କୁ ଦେଖି ଅନ୍ୟମାନେ ଭାବନ୍ତି, ସେ ଏକ ଧର୍ମପ୍ରାଣ ବ୍ୟକ୍ତି । ଏଇଠି ପ୍ରଶ୍ନ ଉଠୁଛି । ସେହି ଭସ୍ମ ଧାରଣ କରି ଯେକୌଣସି ଅନ୍ୟାୟ କଲେ ବି କ'ଣ ସେମାନେ ଦୋଷମୁକ୍ତ ହୋଇଯାଆନ୍ତି ? ଯଦି ସତରେ ଦୋଷମୁକ୍ତ ହୋଇଯାଆନ୍ତି ତେବେ ସେୟା ହିଁ ହେଉଛି ବିଭୂତିର ମାୟା ।

*********

# ଭିତ୍ତିହୀନ ବିଶ୍ୱାସର ସଂକେତ

ଭିତ୍ତିହୀନ ବିଶ୍ୱାସ କେବଳ ଭାରତରେ ନୁହେଁ, ସାରା ଦୁନିଆର ଲୋକମାନଙ୍କ ଭିତରେ ଏହା ରହିଛି । ସମାଜର ଗୋଟିଏ ବିଶିଷ୍ଟ ବର୍ଗ ଭିତ୍ତିହୀନ ବିଶ୍ୱାସକୁ ଧର୍ମ ସହିତ ଯୋଡିଦେଇ ନିଜପାଇଁ ଧନ ଅର୍ଜନର ଏକ ସୁଗମ ପନ୍ଥା ଆବିଷ୍କାର କରିଦେଇଛନ୍ତି । କିଛିବର୍ଷ ପୂର୍ବରୁ ଧର୍ମଶାସ୍ତ୍ରରୁ ଉଦ୍ଧୃତ ଉପଦେଶ, ଆଦେଶ ଓ ନିର୍ଦ୍ଦେଶକୁ ପତ୍ରପତ୍ରିକାରେ ପ୍ରକାଶିତ କରି ଏବଂ ଧାର୍ମିକ ସଭା ଆୟୋଜନ କରି ପ୍ରବଚନ ମାଧ୍ୟମରେ ଭିତ୍ତିହୀନ ବିଶ୍ୱାସର ଧନ୍ଦା ଚାଲୁଥିଲା । ଆଜିର ଯୁଗରେ ଟେଲିଭିଜନ, ଇଣ୍ଟେରନେଟ୍, ମୋବାଇଲ୍ ଫୋନ ଆଦିର ବ୍ୟବହାର ଭିତ୍ତିହୀନ ବିଶ୍ୱାସକୁ ପ୍ରଚାର ଓ ପ୍ରସାର କରିବା କାମ ଅନେକ ଗୁଣରେ ବୃଦ୍ଧି କରିଦେଇଛି । ତଥାକଥିତ କେତେକ ଧାର୍ମିକ ଠିକାଦାର, ବ୍ରାହ୍ମଣ, ମୌଲବୀ, ପାଦ୍ରୀ, ସାଧୁ, ସନ୍ଥ, ଗୁଣିଆ, ଜ୍ୟୋତିଷ ଆଦିଙ୍କର ଏହି ଧନ୍ଦାର ପ୍ରସାର ପଛରେ ପୂର୍ଣ୍ଣ ସହଯୋଗ ରହିଛି । ଭାଗ୍ୟବାଦ, ପୁନର୍ଜନ୍ମ, ଜାତି ବୈଷମ୍ୟ, ଛୁଆଁଅଛୁଆଁ ଉପରେ ଆଧାରିତ ବ୍ରାହ୍ମଣବାଦୀ ବିଚାର ଓ ବ୍ୟବହାରକୁ ସଂପୂର୍ଣ୍ଣ ତ୍ୟାଗ କରି ସମତାମୂଳକ ସମାଜର ସ୍ଥାପନ କରିବାପାଇଁ ଉତ୍ତର ପ୍ରଦେଶର ଏକ ସଂସ୍ଥା "ଅର୍ଜକ ସଂଘ" ଏକ ବିକଳ୍ପ ପନ୍ଥାର ପ୍ରସ୍ତାବ ଦେଇଛି । ଏହା ବ୍ୟତୀତ ଆହୁରି ଅନେକ ତର୍କଶୀଳ ସଂଗଠନ ସମାଜରୁ ଭିତ୍ତିହୀନ ବିଶ୍ୱାସଗୁଡିକୁ ଦୂର କରିବାପାଇଁ ପ୍ରୟାସରତ ଅଛନ୍ତି ।

ପ୍ରତ୍ୟେକ ଦେଶର ପରିବେଶ, ଜଳବାୟୁ, ସାମାଜିକ ଚଳଣୀ ଏବଂ ନିଜର ରୁଚି ଅନୁସାରେ ବେଶଭୂଷା ଧାରଣ କରିବା ଏକ ସାଧାରଣ କଥା । ରଙ୍ଗବେରଙ୍ଗ ପୋଷାକ ସହିତ ବିଭିନ୍ନ ଅଳଙ୍କାର ବ୍ୟବହାର କରିବା ପ୍ରଥା ବି ପ୍ରଚଳିତ ଅଛି । ଏହା ସହିତ ଆହୁରି ଅନେକ ଜିନିଷ ମଣିଷ ବ୍ୟବହାର କରିଥାଏ କେବଳ ଧାର୍ମିକ ଭିତ୍ତିହୀନ ବିଶ୍ୱାସ କାରଣରୁ । ଆମେ ଏଠି

ସମାଜରେ କେବଳ ହିନ୍ଦୁ ସମାଜରେ ବ୍ୟବହୃତ କିଛି ବସ୍ତୁ ଉପରେ ବିଚାର କରିବା । କଳାଟିକା- ଛୋଟ ଶିଶୁଙ୍କ ମଥାରେ ବା ଗାଲରେ ମା'ମାନେ କଳାଟିକା ଲଗାଇଥାଆନ୍ତି । ବିଶ୍ୱାସ କରାଯାଏ ଯେ, ଏହାଦ୍ୱାରା ଶିଶୁମାନଙ୍କ ଉପରେ କାହାର ଦୁଷ୍ଟ ଦୃଷ୍ଟି ଲାଗିବନି । ଦୁଷ୍ଟ ଦୃଷ୍ଟି ଲାଗିଲେ ଶିଶୁଙ୍କୁ ବେମାର ହୋଇଯିବ ।

ହେତୁବାଦୀ ମତ- ମଣିଷର ଦୃଷ୍ଟିରେ ଏମିତି କିଛି ଶକ୍ତି ନଥାଏ, ଯାହାଦ୍ୱାରା କେହି ବେମାର ହୋଇଯିବ । ଦ୍ୱିତୀୟତଃ, ଛୋଟ ଶିଶୁମାନେ ସମସ୍ତଙ୍କ ପ୍ରିୟ ଲାଗନ୍ତି । ଯେତେ କଠୋରମନା ଲୋକ ହେଲେ ବି କଅଁଳ ଶିଶୁର ହସକୁରା ମୁହଁଟିକୁ ସେ ଦେଖିଲେ ଗେଲ କରିବାକୁ ଚାହିଁବ । ଏହା ଏକ ସ୍ୱାଭାବିକତା, ତେଣୁ ଶିଶୁର ମଥାରେ କିମ୍ବା ଗାଲରେ ବଡବଡ କଳାଟିକା ଲଗେଇ ମୁହଁଟିକୁ ବିକୃତ କରିବା ପଛରେ ଥାଏ କେବଳ ଭିତ୍ତିହୀନ ବିଶ୍ୱାସ । ଏହା ପରୀକ୍ଷିତ ଯେ, କଳାଟିକା କୌଣସି ଶିଶୁକୁ କୌଣସି ରୋଗରୁ ରକ୍ଷା କରିପାରିନି ।

କଳାସୂତା- ଆମ ସମାଜରେ ମା'ମାନେ ଛୁଆମାନଙ୍କ ବେକରେ, ହାତରେ, ଅଣ୍ଟାରେ କିମ୍ବା ଗୋଡରେ ଗୋଟିଏଗୋଟିଏ କଳାସୂତା ବାନ୍ଧିଦିଅନ୍ତି । ବିଶ୍ୱାସ ରହିଛି ଯେ, ଏପରି କଲେ କୌଣସି ଦୁଷ୍ଟାତ୍ମା ଶିଶୁର ଅନିଷ୍ଟ କରିପାରିବନାହିଁ ।

ହେତୁବାଦୀ ମତ- ଆତ୍ମାର ସତ୍ତା ବିଜ୍ଞାନସମ୍ମତ ସତ୍ୟ ନୁହେଁ । ତେଣୁ ଦୁଷ୍ଟାତ୍ମା ବା ପୁଣ୍ୟାତ୍ମାର ପ୍ରଶ୍ନ ଉଠୁନାହିଁ । ବରଂ କଳାସୂତା ବାନ୍ଧି ରଖିଲେ ଶିଶୁର କୋମଳ, ସୂକ୍ଷ୍ମ ଚର୍ମରେ ଜୀବାଣୁ ଲାଗି କେତେକ ଚର୍ମରୋଗ ହେବାର ସଂଭାବନା ଥାଏ ।

ଡେଉଁରିଆ- କେତେକ ଭଣ୍ଡ ତାନ୍ତ୍ରିକ, ବାବା, ସାଧୁ, ଜ୍ୟୋତିଷ

ମଣିଷର ରିଷ୍ଟ ଖଣ୍ଡନ କରି ସଫଳତା ପ୍ରାପ୍ତ କରେଇପାରିବାର ମନ ଭୁଲାଣିଆ ଗାଲୁଗପ ଶୁଣାଇ ତେଉଁରିଆ ପିନ୍ଧିବାକୁ ଉପଦେଶ ଦେଇଥା'ନ୍ତି । ଅନେକ ବ୍ୟକ୍ତି ସେମାନଙ୍କର କଥାକୁ ବିଶ୍ୱାସ କରି ତେଉଁରିଆ କିଣି ପିନ୍ଧନ୍ତି ।

ହେତୁବାଦୀ ମତ- ତେଉଁରିଆ ଭିତରେ ଏଭଳି କୌଣସି ଚମତ୍କାର ଶକ୍ତି ନାହିଁ, ଯାହାଦ୍ୱାରା ମଣିଷର ଶିକ୍ଷା, ସମ୍ମାନ, ପ୍ରମୋସନ, ବ୍ୟବସାୟ ଆଦିରେ ସଫଳତା ମିଳିବ । ବିନା ପରିଶ୍ରମରେ କିଛି ମିଳେ ନାହିଁ । ତେଉଁରିଆର ପ୍ରଭାବଶାଳୀ ଗୁଣ ଉପରେ ବିଶ୍ୱାସ କରିବା ପୂର୍ବରୁ କେତୋଟି ସାଧାରଣ ପ୍ରଶ୍ନ ମନକୁ ଆସିବା ସ୍ୱାଭାବିକ ।

ତେଉଁରିଆ ବିକ୍ରୀ କରୁଥିବା ଜ୍ୟୋତିଷ ବା ତାନ୍ତ୍ରିକଙ୍କ ପରିବାରର ସମସ୍ତ ସଦସ୍ୟ ତେଉଁରିଆ ପିନ୍ଧି ନିରୋଗ ହୋଇପାରୁଛନ୍ତି କି ? ସବୁକାମରେ ସେମାନେ ସଫଳ ହୋଇପାରୁଛନ୍ତି କି ? ତାଙ୍କ ଉପରେ କୌଣସି ବାଧାବିଘ୍ନ ପଡୁନି କି ? ଏସବୁ ପ୍ରଶ୍ନଗୁଡିକର ଉତ୍ତର ଖୋଜିଲେ ଆପଣ ନିଶ୍ଚୟ ନିରାଶ ହେବେ । ଏହାର କାରଣ, ତାନ୍ତ୍ରିକ ଓ ତାଙ୍କ ପରିବାରର ଲୋକମାନେ ବି ତେଉଁରିଆ ପିନ୍ଧିଥିବା ଅନ୍ୟ ଲୋକମାନଙ୍କ ଭଳି ରୋଗ, ଶୋକ, ଦୁଃଖ ଆଦି ଭୋଗ କରୁଛନ୍ତି । ହଁ, ଏ କଥା ସତ ଯେ, ସେମାନଙ୍କର ଆର୍ଥିକ ଅବସ୍ଥା ନିଶ୍ଚୟ ସ୍ୱଚ୍ଛଳ ହୋଇଥିବ କାରଣ ଦୁଇଟଙ୍କିଆ ତେଉଁରିଆକୁ ଦୁଇହଜାର ଟଙ୍କା ଦେଇ କିଣି ନେଉଥିବା ଭିତ୍ତିହୀନ ବିଶ୍ୱାସୀ ଲୋକମାନଙ୍କର ଅଭାବ ନାହିଁ ଆମ ସମାଜରେ ।

ମୁଦି- ଅନ୍ୟାନ୍ୟ ଖଳଙ୍କାର ଭଳି ହାତ ଆଙ୍ଗୁଠିରେ ମୁଦି ପନ୍ଧିବା ଏକ ସୌକ ହୋଇପାରେ କିନ୍ତୁ ଜ୍ୟୋତିଷମାନଙ୍କ କଥାକୁ ବିଶ୍ୱାସ କରି ସମୃଦ୍ଧି ଲାଭ ଆଶାରେ ବିଭିନ୍ନ ଧାତୁରେ ତିଆରି ମୁଦିରେ ବିଭିନ୍ନ ପ୍ରକାର ପଥର

ଲଗେଇ ଆଙ୍ଗୁଠିରେ ପିନ୍ଧିବା ଏକ ଭିତ୍ତିହୀନ ବିଶ୍ୱାସ ମାତ୍ର । ତାନ୍ତ୍ରିକ ଓ ଜ୍ୟୋତିଷମାନେ ଅନ୍ୟ ବ୍ୟକ୍ତିଙ୍କର ରାଶି, ନକ୍ଷତ୍ର ଓ ଜନ୍ମ ତିଥି ଗଣନା କରି କେଉଁ ଧାତୁରେ, କେଉଁ ରଙ୍ଗର ପଥର ଲଗାଇ ମୁଦି ପିନ୍ଧିଲେ ସର୍ବସିଦ୍ଧି ହେବ, ତା' କହିଥାଆନ୍ତି । ଲୋକମାନେ ବେଶ୍ ମହଂଗା ଦାମ୍‌ରେ ମୁଦି କିଣି ଭାବନ୍ତି, ସବୁ କିଛି ଆପେଆପେ ମିଳିଯିବ ।

ହେତୁବାଦୀ ମତ - ଯଦି ମୁଦି ପିନ୍ଧିଲେ ସଫଳତା ମିଳୁଥା'ନ୍ତା ତେବେ କାହାର ଆଉ ପରିଶ୍ରମ କରିବା ଆବଶ୍ୟକ ପଡନ୍ତା ନାହିଁ ବରଂ ବେଶୀଗୁଡିଏ ମୁଦି ପିନ୍ଧିଲେ, ତା' ଭିତରେ ଜମା ହେଉଥିବା ମଇଳା ଓ ଜୀବାଣୁ ଖାଦ୍ୟ ସହିତ ପେଟକୁ ଯାଇ ଅସୁସ୍ଥ କରିବାର ସଂଭାବନା ଥାଏ । ମୁଦି କିଣୁଥିବା ଲୋକମାନଙ୍କର ଫାଇଦା ହେଉ ବା ନ ହେଉ, ମୁଦି ଓ ପଥର ବିକ୍ରୀ କରୁଥିବା ତାନ୍ତ୍ରିକମାନଙ୍କର ଫାଇଦା ନିଶ୍ଚୟ ହୋଇଥାଏ ।

ଚନ୍ଦନ ଓ ସିନ୍ଦୂର- କେତେକ ଲୋକ ପ୍ରତିଦିନ କର୍ମସ୍ଥଳକୁ ବାହାରିବା ପୂର୍ବରୁ ଘରେ ପୂଜା କରି ମଥାରେ ଓ କଣ୍ଠରେ ଚନ୍ଦନ କିମ୍ବା ସିନ୍ଦୂର ଟିକା ଲଗେଇଥା'ନ୍ତି । ସେମାନଙ୍କୁ ଦେଖି ସମସ୍ତେ ବୁଝିପାରନ୍ତି ଯେ, ଏହି ବ୍ୟକ୍ତି ଜଣକ ହେଉଛନ୍ତି, "ଜଣେ ଧର୍ମପ୍ରାଣ ବ୍ୟକ୍ତି" । ଯିଏ ଯେତେ ପରିମାଣରେ ଚନ୍ଦନ ମାଖି ହୋଇଥା'ନ୍ତି, ସେ ନିଜକୁ ସେତେ ବଡ ଧର୍ମପ୍ରାଣ ବ୍ୟକ୍ତି ବୋଲି ଜଣେଇବାକୁ ଚାହାନ୍ତି । ଧର୍ମପ୍ରାଣ ବ୍ୟକ୍ତିର ଅର୍ଥ ହେଉଛି- ବ୍ୟକ୍ତି ଜଣକ ଦୟାବାନ୍, ସତ୍‌ଚରିତ୍ର, ସତ୍‌କର୍ମ ଏବଂ ଆଧ୍ୟାତ୍ମିକ ଗୁଣସଂପନ୍ନ ।

ହେତୁବାଦୀ ମତ- ଯେଉଁମାନେ ସତରେ ଦୟାବାନ୍, ଚରିତ୍ରବାନ୍ ଓ କର୍ମଠ, ସେମାନେ ନିଜକୁ ବିଜ୍ଞାପିତ କରନ୍ତି ନାହିଁ । ନିଜର କର୍ମ ଓ ବଚନ ମାଧ୍ୟମରେ ସେମାନେ ସମାଜରେ ସମ୍ମାନାସ୍ପଦ ସ୍ଥାନ ହାସଲ କରିଥା'ନ୍ତି । ଦୁଃଖର କଥା ଯେ, ଅନେକ ଭଣ୍ଡ ତଥାକଥିତ "ଧର୍ମପ୍ରାଣ ବ୍ୟକ୍ତି" ଅଫିସରେ

ଲାଞ୍ଚ ନେବାକୁ ଆଦୌ କୁଣ୍ଠାବୋଧ କରୁନାହାନ୍ତି, ସେହିମାନେ ଖାଦ୍ୟ ପଦାର୍ଥରେ ଅପମିଶ୍ରଣ କରିବାକୁ ପଛାଉ ନାହାନ୍ତି। ସେହିମାନେ ମହିଳା ସହକର୍ମୀମାନଙ୍କ ସହ ଅଶ୍ଲୀଳ ବ୍ୟବହାର କରିବାକୁ ଆଦୌ ଲଜ୍ଜା ଅନୁଭବ କରୁନାହାନ୍ତି। ଅପରାଧ କରି କେବେ କେମିତି ସେମାନେ ଧରାପଡିଲେ କହନ୍ତି- "ମୁଁ ଜଣେ ଧର୍ମପ୍ରାଣ ବ୍ୟକ୍ତି। ମୁଁ କ'ଣ କେବେ ଏ ଭଳି ନୀଚ କାମ କରିପାରିବି ?" ସେମାନଙ୍କ ବିରୋଧରେ ସଠିକ୍ ପ୍ରମାଣ ନ ମିଳିଲେ, ସେସ୍ଥଳରେ ସେମାନେ ସହଜରେ ଖସିଯାଆନ୍ତି।

ଶଙ୍ଖା, ସିନ୍ଦୂର- ହିନ୍ଦୁ ଧର୍ମରେ ବିବାହିତା ମହିଳାମାନଙ୍କ ପାଇଁ କେତୋଟି ବାଧ୍ୟତାମୂଳକ ଚିହ୍ନ ରହିଛି ଯଥାଃ- ଶଙ୍ଖା, ସିନ୍ଦୂର, ମଂଗଳସୂତ୍ର ଏବଂ ଗୋଡର ମୁଦି ଇତ୍ୟାଦି। ଭାରତର ଉତ୍ତର ଭାଗର ଅଧିକାଂଶ ହିନ୍ଦୁ ମହିଳାଙ୍କ ପାଇଁ ଶଙ୍ଖା, ସିନ୍ଦୂର ପିନ୍ଧିବା ଅନିବାର୍ଯ୍ୟ। ଦକ୍ଷିଣ ଭାଗର ମହିଳାମାନଙ୍କ ପାଇଁ ମଂଗଳ ସୂତ୍ର ଏବଂ ପାଦର ମୁଦି ଅନିବାର୍ଯ୍ୟ କିନ୍ତୁ ମଥାରେ ସିନ୍ଦୂର ନାଇବା ବାଧ୍ୟତାମୂଳକ ନୁହେଁ।

ହେତୁବାଦୀ ମତ- ହିନ୍ଦୁଧର୍ମର ନୀତିନିୟମ ସବୁ ସ୍ଥାନରେ ଏକାଭଳି କାହିଁକି ନୁହେଁ ? ଦେଶର ଗୋଟିଏ ଭାଗର ମହିଳାମାନେ ମଥାରେ ସିନ୍ଦୂର ନ ଲଗାଇଲେ ଅଶୁଭ ଏବଂ ଅନ୍ୟ ଭାଗର ମହିଳାମାନେ ସିନ୍ଦୂର ନ ଲଗାଇଲେ କୌଣସି ଦୋଷ ନାହିଁ - ଏହା ଏକ ବିରୋଧାଭାସ ନୁହେଁ କି ? ଆଜିକାଲି ଅବଶ୍ୟ ଶିକ୍ଷିତା ରମଣୀମାନେ ସିନ୍ଦୂରକୁ ବାଏ ବାଏ କରିସାରିଲେଣି। ହାତରେ ବି ଚୁଡି ଜାଗାରେ ଏମାନେ ଘଡି ପିନ୍ଧିବାକୁ ପସନ୍ଦ କଲେଣି।

ମଜାକଥା ହେଉଛି ଯେ, ରଢିବାଦୀ ସ୍ୱାମୀମାନେ ମଧ୍ୟ ଏହାର ବିରୋଧ କରିବାକୁ ସାହସ କରିପାରୁନାହାନ୍ତି। ଏହା ସତ୍ୟ ଯେ, ସ୍ତ୍ରୀ ଶଙ୍ଖା ଓ ସିନ୍ଦୂର ନ ପିନ୍ଧିଲେ ସେଇ କାରଣରୁ ତା'ର ସ୍ୱାମୀ ଅକାଳ ମୃତ୍ୟୁବରଣ

କରିବନାହିଁ । ଚୁଟି- ଏହା ହିନ୍ଦୁ ସମାଜର ଏକ ବିଶେଷ ବର୍ଗର ଚିହ୍ନ । ପୂର୍ବକାଳରେ ଗୁରୁକୁଳ ଆଶ୍ରମରେ ରହି ଶିକ୍ଷା ଗ୍ରହଣ କରୁଥିବା ଶିଷ୍ୟମାନଙ୍କ ମୁଣ୍ଡର ପଛପଟେ କିଛି ଲମ୍ବାବାଳ ଛାଡିଦିଆଯାଉଥିଲା । ପରବର୍ତ୍ତୀ କାଳରେ ଅନ୍ୟାନ୍ୟ ଧର୍ମୀୟ କର୍ମକାଣ୍ଡ କରୁଥିବା ବ୍ରାହ୍ମଣ ପୂଜକମାନେ ବି ମୁଣ୍ଡରେ ଚୁଟି ରଖିବା ପରଂପରାକୁ ପାଳନ କଲେ । ଏହାର କୌଣସି ଆବଶ୍ୟକତା ନ ଥିଲେ ବି ପରଂପରାକୁ ବଞ୍ଚେଇ ରଖିବା ପାଇଁ ଆଜି ବି କେତେକ ମନ୍ଦିର ଓ ଆଶ୍ରମର ପୂଜକମାନେ ଚୁଟି ରଖିଥା'ନ୍ତି । ଯଜ୍ଞୋପବୀତ ବା ପଇତା- ଏାହ ହିନ୍ଦୁ ସମାଜର ଏକ ଜାତିଭିତ୍ତିକ ଚିହ୍ନ । କେବଳ ବ୍ରାହ୍ମଣ ଜାତିର ପୁରୁଷମାନେ ହିଁ ଦୀକ୍ଷା ନେବାପରେ ପଇତା ଧାରଣ କରନ୍ତି । ଅନ୍ୟ ଜାତିର ପୁରୁଷମାନେ ହିନ୍ଦୁ ହେଲେ ମଧ୍ୟ ସେମାନଙ୍କର ପଇତା ଧାରଣ କରିବା ନିୟମ ନାହିଁ । ଏହାର ମୁଖ୍ୟ କାରଣ ଥିଲା ଯେ, ସମସ୍ତେ ଯଦି ପଇତା ଧାରଣ କରିବେ, ତେବେ ଦ୍ୱିଜ ବା ବ୍ରାହ୍ମଣମାନଙ୍କୁ ଦେଖିବା ମାତ୍ରେ ଚିହ୍ନିହେବନି । ସେତେବେଳେ ବ୍ରାହ୍ମଣମାନଙ୍କ ପଇତା ଏକ ଅମୋଘ ଅସ୍ତ୍ର ରୂପେ ବ୍ୟବହାର ହେଉଥିଲା । ବ୍ରାହ୍ମଣମାନେ ଯଦି କାହା ଉପରେ ଅସନ୍ତୁଷ୍ଟ ହେଉଥିଲେ, ସେମାନେ ତୁରନ୍ତ ପଇତାକୁ ଧରି ସେହି ବ୍ୟକ୍ତିଙ୍କୁ ଅଭିଶାପ ଦେଉଥିଲେ ବୋଲି ଶାସ୍ତ୍ରରେ ବର୍ଣ୍ଣନା କରାଯାଉଛି ।

ହେତୁବାଦୀ ମତ- ପଇତା ପିନ୍ଧିଥିବା ବ୍ରାହ୍ମଣମାନେ ସେତେବେଳେ ଜାଣିଶୁଣି କମିଜ ପିନ୍ଧୁ ନ ଥିଲେ କାରଣ ଯଜମାନମାନେ ତାଙ୍କୁ ସହଜରେ ଚିହ୍ନିପାରି ସମ୍ମାନ ଦେବେ । ଆଜିକାଲି ବ୍ରାହ୍ମଣମାନେ କେବଳ ପୁରୋହିତ କାମ କରୁନାହାନ୍ତି, ସେମାନେ ସମାଜର ଅନ୍ୟାନ୍ୟ କର୍ମକ୍ଷେତ୍ରରେ ମଧ୍ୟ କାମ କରୁଛନ୍ତି । ସେମାନେ ବାନିୟାନ, ସାର୍ଟ, ତା' ଉପରେ କୋଟ୍ ବି ପିନ୍ଧୁଛନ୍ତି । ଏଥିଯୋଗୁଁ ପଇତା ଦେଖାଯିବାର ପ୍ରଶ୍ନ ହିଁ ଉଠୁନି ତେଣୁ ପଇତା ପିନ୍ଧିବାର ଆବଶ୍ୟକତା ନାହିଁ । ନୂତନ ପିଢିର ଅନେକ ବ୍ରାହ୍ମଣ ଯୁବକ ନିଜ ପଇତାକୁ

ବାହାର କରି ରଖିଦେଉଛନ୍ତି । ଧର୍ମୀୟ କର୍ମକାଣ୍ଡବେଳେ ପଇତା ଧାରଣ କରି ସେମାନେ ସମସ୍ତଙ୍କୁ ଦେଖେଇଥା'ନ୍ତି ଯେ, ଆମେ ପରଂପରାକୁ ମାନି ଚଳୁଛୁ ।

ରକ୍ଷା ବନ୍ଧନ - ନିଜର ସୁରକ୍ଷାପାଇଁ ଭଉଣୀମାନେ ଭାଇମାନଙ୍କ ହାତରେ ରାକ୍ଷୀ ବାନ୍ଧିବାର ପରମ୍ପରା ସମାଜରେ ଚାଲୁରହିଛି । (ନାରୀ ଶିକ୍ଷା ଓ ନାରୀ ସଶକ୍ତିକରଣ ଯୋଗୁଁ ଅନେକ ପରିବାରରେ ଏବେ ଭଉଣୀମାନେ ଭାଇମାନଙ୍କୁ ସୁରକ୍ଷା ଦେବା ସ୍ଥିତିକୁ ଆସିପାରିଲେଣି ।) କିନ୍ତୁ ମନ୍ଦିରର ପୂଜକମାନେ ଭକ୍ତଙ୍କ ହାତରେ ରାକ୍ଷୀ ପୂର୍ଣ୍ଣିମା ଅବସରରେ ନାଲିସୂତା ବାଂଧିବା ପଛରେ ଉଦ୍ଦେଶ୍ୟ ହେଉଛି ଧନ କମେଇବା । ଭକ୍ତମାନଙ୍କ ମାନସିକ ଦୋହନ କରି ଧନ ରୋଜଗାର କରିବା ହେଉଛି ଏହାର ମୁଖ୍ୟ ଉଦ୍ଦେଶ୍ୟ । ନାଲି ସୂତାରେ ଏମିତି କଅଣ ଶକ୍ତି ଅଛି ଯେ, ତା' ମଣିଷକୁ ସୁରକ୍ଷା ଦେଇପାରିବ ? ଏ କଥା ଭକ୍ତ ଜାଣେ, ପୂଜକ ବି ଜାଣେ ତଥାପି ଭକ୍ତ ସୂତାଟିକୁ ହାତରୁ ଖୋଲି ଫିଙ୍ଗିଦେବାର ସାହସ ଜୁଟେଇପାରେନାହିଁ । ଭୟ ଥାଏ, କାଳେ ଦେବତା ଅସନ୍ତୁଷ୍ଟ ହୋଇଯିବେ । ହାତରେ ସୂତାଟି ବଂଧାହୋଇ ରହିବା ଫଳରେ ପାଣି ଲାଗି ତା' ଓଦା ହେବ ଏବଂ ମଇଳା ବି ହେବ, ଜୀବାଣୁ ଜାତ ହୋଇ ଚର୍ମରୋଗ ବି ହୋଇପାରେ । ଭିତ୍ତିହୀନ ବିଶ୍ୱାସର ଏହା ହିଁ ପରିଣାମ ।

ଆହୁରି ଏମିତି ଅନେକ ପ୍ରକାର ପ୍ରଥା ଦେଶର ବିଭିନ୍ନ ଅଞ୍ଚଳରେ ରହିଛି, ଯାହାର କୁପ୍ରଭାବ ସରଳ ଜନତାଙ୍କ ଉପରେ ପଡୁଛି । ଆମର ମୁକ୍ତମନା, ସଚେତନ ପାଠକମାନେ ଯଦି ନିଜ ନିଜ ଅଞ୍ଚଳରେ ଥିବା ଭିତ୍ତିହୀନ ବିଶ୍ୱାସ୍‌ଗୁଡିକୁ ଜନତାଙ୍କ ମନରୁ ଦୂର କରିପାରିବେ, ତେବେ ଏକ ସୁସ୍ଥ ଓ ସୁନ୍ଦର ସମାଜ ଗଠନ ହୋଇପାରିବ ।

********

# ଭକ୍ତର ଭଗବାନ : ଏକ ବିଶ୍ଳେଷଣ

***ଦିନରାତି ଭଗବାନଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କରୁଥିଲେ ବି ଅନେକ ଲୋକଙ୍କ ରୋଗ, ଶୋକ, ଅଭାବ ମେଣ୍ଟିପାରୁନି । ଅନେକ ଭକ୍ତ ଭଗବାନଙ୍କୁ ପୂଜା ଓ ପ୍ରାର୍ଥନା କରିକରି ଜୀବନ ଶେଷ କରିଦେଉଛନ୍ତି କିନ୍ତୁ ଜୀବନ ସାରା ଦୁଃଖ, କଷ୍ଟ ଆଦି ଭୋଗ କରୁଛନ୍ତି । ଏହା ସତ୍ତ୍ୱେ ଭକ୍ତର ଭଗବାନ ବୋଲି କହିବା କେତେଦୂର ଯୁକ୍ତିସଙ୍ଗତ ?***

ପିଲାଟି ଦିନରୁ ଆମେ ଅନେକ ପ୍ରକାର ଧର୍ମୀୟ ପ୍ରବାଦ ଓ ଆପ୍ତବଚନ ଶୁଣି ଆସୁଛୁ । ଧର୍ମୀୟ ଭାବନା ଓ ଈଶ୍ୱର ବିଶ୍ୱାସ ଯୋଗୁଁ ସେ ଗୁଡିକ ଉପରେ ସନ୍ଦେହ ଜାତ ହେଲେ ବି କେହି ତର୍କ ବ ପ୍ରଶ୍ନ କରନ୍ତି ନାହିଁ । କୁହାଯାଉଥିବା ଆପ୍ତବଚନ ଗୁଡିକ କେତେ ସତ, କେତେ ମିଛ ବିଚାର କରିବାକୁ କେହି ସାହସ କରୁନାହାନ୍ତି । ଏହାର ଦୁଇଟି କାରଣ ରହିଛି । ପ୍ରଥମ : ନିଜ ମନରେ ପିଲାଟି ବେଳୁ ଗଡି ଉଠିଥିବା ବଦ୍ଧମୂଳ ଅବଧାରଣକୁ ପରିତ୍ୟାଗ କରିବା ସହଜ ହୁଏନି । ଦ୍ୱିତୀୟ : ଭିତ୍ତିହୀନ ବିଶ୍ୱାସକୁ ପରିତ୍ୟାଗ କରିବା ପାଇଁ ମନ ଚାହୁଁଥିଲେ ବି ସମାଜର ବିରୋଧକୁ ସାମନା କରିବା ସହଜ ହୁଏନି । ସେଥିପାଇଁ ଅନେକ ଉଚ୍ଚଶିକ୍ଷିତ ଓ ପ୍ରଗତିଶୀଳ ବୋଲାଉଥିବା ବ୍ୟକ୍ତିବିଶେଷ ବି କୌଣସି ଧର୍ମୀୟ ପ୍ରବାଦ ଉପରେ ନିଜର ବିରୋଧି ମତ ବ୍ୟକ୍ତ କରନ୍ତି ନାହିଁ । ଯାହା ଯେମିତି ଚାଲିଛି, ଚାଲିଥାଉ କହି ସମସ୍ୟାରୁ ଦୂରେଇ ରୁହନ୍ତି ।

ଆମେ ଏଇଠି ଗୋଟିଏ ବହୁ ପ୍ରଚଳିତ ଆପ୍ତବଚନ ଉପରେ ବିଚାର କରିବା । କୁହାଯାଏ "ଭକ୍ତର ଭଗବାନ" ଏବଂ ଯାହାର ଭକ୍ତି ଯେମିତି ତାହାର ଭଗବାନ ସେମିତି । ଦୁଇଟି ଯାକ ଆପ୍ତବଚନର ଅର୍ଥ ଏକ ଅର୍ଥାତ ଭକ୍ତି ନକଲେ ଐଶରୀୟ ଶକ୍ତି ମିଳିବ ନାହିଁ ।

ଏଇଠି ମନରେ ପ୍ରଶ୍ନ ଉଠୁଛି- ଭଗବାନ ଯଦି ସମସ୍ତଙ୍କର ସୃଷ୍ଟିକର୍ତ୍ତା,

ତେବେ ତାଙ୍କୁ ଯିଏ ପୂଜା ଓ ପ୍ରାର୍ଥନା କରିବ ତାକୁ ହିଁ ଭଗବାନ କୃପା କରିବେ, ଯେଉଁମାନେ କରିବେ ନାହିଁ ତାଙ୍କୁ ଦୁଃଖ ଓ କଷଣ ଦେବେ କାହିଁକି ?

ଏହି ପ୍ରଶ୍ନର ଯଥାର୍ଥତା ଉପରେ ବିଚାର କରାଯାଉ । ପୃଥିବୀର ସମସ୍ତ ଜୀବ ଜଗତର ଗୋଟିଏ ପ୍ରାକୃତିକ ଗୁଣ ହେଉଛି ଯାହା ଠାରୁ ସେ ସ୍ନେହ, ଶ୍ରଦ୍ଧା ଓ ସୁରକ୍ଷା ପାଇବାର ଗ୍ୟାରେଣ୍ଟି ବା ଆଶ୍ୱାସନା ପାଏ, ସେ ତାହାରି ଅଧିନସ୍ଥ ହୋଇଯାଏ । ବିଷଧର ସର୍ପ, ହିଂସକ ସିଂହ, ବାଘ ଓ ଭାଲୁ, ଶକ୍ତିଶାଳୀ ବିଶାଳବପୁଧାରୀ ହାତୀ ଇତ୍ୟାଦି ସାମାନ୍ୟ ମଣିଷର ସ୍ନେହ, ଶ୍ରଦ୍ଧା ପାଇ ଅଧିନସ୍ଥ ସ୍ୱୀକାର କରି ନେଉଛନ୍ତି । ଗୃହପାଳିତ ପଶୁ ପକ୍ଷୀମାନଙ୍କ ଉଦାହରଣ ସମସ୍ତେ ସ୍ୱୀକାର କରିବେ । ଏଥିରୁ ସ୍ପଷ୍ଟ ବୁଝାପଡୁଛି ଯେ ପ୍ରଥମେ ମଣିଷର ଆଚରଣ ସେହିଭଳି ଦେଖି ପଶୁ ଓ ପକ୍ଷୀମାନେ ବଶ୍ୟତା ସ୍ୱୀକାର କରୁଛନ୍ତି । ଅନ୍ୟ ଅର୍ଥରେ ପଶୁ ଓ ପକ୍ଷୀମାନେ ମଣିଷକୁ ଭକ୍ତି କରୁଛନ୍ତି । ମଣିଷ ସେମାନଙ୍କୁ ଯେମିତି ନିର୍ଦ୍ଦେଶ ଦେଉଛନ୍ତି, ସେମାନେ ତାହା ପାଳନ କରୁଛନ୍ତି ।

ମଣିଷମାନଙ୍କର ବି ଠିକ୍ ସେହି ଗୁଣ ଅଛି । ସେମାନେ ଯେଉଁଠି ସ୍ନେହ, ଶ୍ରଦ୍ଧା ଓ ସୁରକ୍ଷା ପାଇବାର ଗ୍ୟାରେଣ୍ଟି ପାଉଛନ୍ତି, ସେଇଠି ନିଜର କୃତଜ୍ଞତା ପ୍ରକଟ କରୁଛନ୍ତି । ଜନ୍ମ କରିଥିବା ପିତା ଓ ମାତା ପ୍ରଥମେ ସନ୍ତାନକୁ ସ୍ନେହ, ଶ୍ରଦ୍ଧା, ଖାଦ୍ୟ ଓ ସୁରକ୍ଷା ପ୍ରଦାନ କରୁଥିବାରୁ ସନ୍ତାନ ପିତା ଓ ମାତାଙ୍କୁ ଭକ୍ତି କରିଥାଏ । ଅପବାଦ କ୍ଷେତ୍ରରେ ଯେଉଁ ପିତା, ମାତା ସନ୍ତାନ ପ୍ରତି ଉପେକ୍ଷା ବା ଅବହେଳା କରିଥାନ୍ତି, ସେଇଠି ସନ୍ତାନ ବି ଭକ୍ତି କରିନଥାଏ ।

ଏଇଠି ଭଗବାନଙ୍କ କ୍ଷେତ୍ରରେ ବି ଏହି ନିୟମ ଲାଗୁହେବ ନାହିଁ କାହିଁକି ? ନିଜେ ସୃଷ୍ଟି କରିଥିବା ମଣିଷମାନଙ୍କୁ ଯଦି ଭଗବାନ ପ୍ରଥମେ ସୁଖ, ସୁବିଧା ଓ ସୁରକ୍ଷା ପ୍ରଦାନ କରିବେ, ସମସ୍ତ ରୋଗ, ଶୋକ, ଅଭାବ,

କଷଣରୁ ମୁକ୍ତି ରଖିବେ ତେବେ ମଣିଷ ତ ଆପେ ଆପେ ଭଗବାନଙ୍କୁ ଭକ୍ତି କରିବ । ମଣିଷ ଭକ୍ତି କଲେ ହିଁ ଭଗବାନ କୃପା କରିବେ- ଏହା କହିବାଦ୍ୱାରା ଭଗବାନଙ୍କ ମହାନତା ନୁହେଁ କ୍ଷୁଦ୍ରତାକୁ ପ୍ରମାଣିତ କରୁନାହିଁ କି ?

ପୃଥିବୀର ସମସ୍ତ ଜୀବଜଗତରୁ କେବଳ ମଣିଷକୁ ଛାଡିଦେଲେ ଅନ୍ୟ କୌଣସି ପ୍ରାଣୀ ଭଗବାନଙ୍କୁ ଜାଣନ୍ତି ନାହିଁ କି ଚିହ୍ନନ୍ତି ନାହିଁ । ସେମାନେ ଭଗବାନଙ୍କୁ ପୂଜା କିମ୍ବା ପ୍ରାର୍ଥନା ବି କରନ୍ତି ନାହିଁ । ତଥାପି ସେମାନଙ୍କ ଜୀବନ ଚକ୍ର ସ୍ୱାଭାବିକ ଭାବେ ଚାଲିଛି ।

ମଣିଷମାନଙ୍କର ଆଉ ଗୋଟିଏ ଆପ୍ତବଚନ ବହୁ ପ୍ରଚଳିତ । "ଈଶ୍ୱର ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ" । ଅର୍ଥାତ୍ ସେ ସୃଷ୍ଟି କରିଥିବା ସମସ୍ତ ପ୍ରାକୃତିକ ସାଧନ ପ୍ରାଣୀଙ୍କ ପାଇଁ ଉପଯୁକ୍ତ ପ୍ରଣାଳୀରେ ନିର୍ମାଣ କରାଯାଇଛି । ଏଇଠି ପ୍ରଶ୍ନ ଉଠୁଛି- ଏହା ଯଦି ସତ୍ୟ ତେବେ ମଣିଷ ମନରେ ସନ୍ଦେହ କାହିଁକି ରହୁଛି ଯେ ଭଗବାନ ପ୍ରାକୃତିକ ସାଧନ ନିର୍ମାଣ କରିବାରେ କିଛି ଭୁଲ କରି ଦେଉଛନ୍ତି । ମଣିଷ ଭଗବାନଙ୍କୁ ଭକ୍ତିର ସହ ପ୍ରାର୍ଥନା କରିବା ଅର୍ଥ ହେ ଭଗବାନ ତୁମ ସୃଷ୍ଟିରେ କିଛି ଭୁଲ୍ ରହିଯାଇଛି, ସେଇଥିପାଇଁ ଆମେ କଷ୍ଟ ଭୋଗ କରୁଛୁ, ଦୟାକରି ସେଥିରେ ଏମିତି ପରିବର୍ତ୍ତନ କରିଦିଅ, ଯାହା ଆମ ପାଇଁ ସୁଖ ଦାୟକ ହେବ । ଅନ୍ୟାନ୍ୟ ପ୍ରାଣୀଙ୍କ ଭଳି ପ୍ରାର୍ଥନା ନ କରି ପ୍ରକୃତିକୁ ନିଜର ସୁବିଧା ଅନୁସାରେ ଗ୍ରହଣ କରି କେବଳ କର୍ତ୍ତବ୍ୟ କଲେ ଅସୁବିଧା କେଉଁଠି ? ଦୁନିଆର ବହୁତ ବ୍ୟକ୍ତି ଭଗବାନଙ୍କୁ ପୂଜା ଓ ପ୍ରାର୍ଥନା ନକରି ମଧ୍ୟ କେବଳ ଉଚିତ କର୍ତ୍ତବ୍ୟ କରି ସଫଳତା ପ୍ରାପ୍ତ କରିଛନ୍ତି ଓ କରୁଛନ୍ତି । ତଥାକଥିତ ଭଗବାନ ସେମାନଙ୍କୁ ତ ଅଲଗା ଭାବେ ଦଣ୍ଡ ଦେଉନାହାନ୍ତି ଯେ ତୁମେ ମୋତେ କାହିଁକି ପ୍ରାର୍ଥନା କରୁନାହଁ ?

ଅନ୍ୟ ଏକ ବିଚାରଣୀୟ ବିଷୟ ହେଉଛି- ପୃଥିବୀର କେତେକ

ଧର୍ମରେ ଏକା ବା ଦୁଇଟି ଈଶ୍ୱର ବା ଈଶ୍ୱରପୁତ୍ର ଥିବା କଥା ବିଶ୍ୱାସ କରାଯାଏ। ହିନ୍ଦୁ ଧର୍ମରେ ତେତିଶ କୋଟି ଦେବୀ, ଦେବତା ରହିଥିବା ବିଶ୍ୱାସ କରାଯାଏ। ସୂର୍ଯ୍ୟ ଆଲୋକ ଶକ୍ତିର ଦେବତା, ଇନ୍ଦ୍ର ଓ ବରୁଣ ଜଳର ଦେବତା, ବାୟୁ ଏକ ଦେବତା। ପ୍ରାଣୀ ପାଇଁ ଏହି ତିନୋଟି ହେଉଛି ମୌଳିକ ଆବଶ୍ୟକତା ଏମାନଙ୍କୁ କିଏ ପୂଜା ବା ପ୍ରାର୍ଥନା କରୁ ବା ନକରୁ ମାଗଣାରେ ସମସ୍ତଙ୍କୁ ମିଳୁଛି। ବାକି ଆବଶ୍ୟକତା ଭିତରେ ଖାଦ୍ୟ, ସ୍ୱାସ୍ଥ୍ୟ, ଶିକ୍ଷା ବା ଜ୍ଞାନ, ବାସସ୍ଥାନ ପାଇଁ ବି ବିଭିନ୍ନ ଦେବୀ ଦେବତା ରହିଛନ୍ତି।

ଲକ୍ଷ୍ମୀଙ୍କୁ ପୂଜା କରି ଧନ, ସରସ୍ୱତୀଙ୍କୁ ପୂଜାକରି ଜ୍ଞାନ, ଅଶ୍ୱିନୀ କୁମାରଙ୍କୁ ପୂଜା କରି ସ୍ୱାସ୍ଥ୍ୟ, ବିଶ୍ୱକର୍ମାଙ୍କୁ ପୂଜା କରି ଘର କେହି ବି ମାଗଣାରେ ପାଇପାରୁ ନାହାନ୍ତି। କଠିନ ପରିଶ୍ରମ, ଗହନ ଅଧ୍ୟୟନ କରି ଧନ ଓ ଜ୍ଞାନ ପ୍ରାପ୍ତ ହୋଇଥାଏ। ଦେବୀ ଓ ଦେବତାଙ୍କୁ ପୂଜା କଲେ ହିଁ ଯଦି ଧନ, ଜ୍ଞାନ ଓ ସ୍ୱାସ୍ଥ୍ୟ ମିଳିଯାଉଥାନ୍ତା ତେବେ ହିନ୍ଦୁ ଭକ୍ତମାନେ ଦୁନିଆରେ ସବୁଠୁ ଆଗରେ ରହିଥାନ୍ତେ। କାରଣ ଧନ ଓ ଜ୍ଞାନର ଦେବୀ, ଦେବତାଙ୍କୁ କେବଳ ହିନ୍ଦୁ ମାନେ ହିଁ ଚିହ୍ନନ୍ତି। ଅନ୍ୟ ଦେଶର ଲୋକମାନଙ୍କୁ ଧନ ଓ ଜ୍ଞାନ କେଉଁ ଦେବତା ଦେଉଛନ୍ତି ? ସେମାନେ ହିନ୍ଦୁମାନଙ୍କ ଅପେକ୍ଷା ପ୍ରଗତିଶୀଳ କାହିଁକି ? ସେମାନଙ୍କ ଭଗବାନ କ'ଣ ହିନ୍ଦୁ ଦେବତାଙ୍କ ଅପେକ୍ଷା ବେଶୀ ଶକ୍ତି ଦେଉଛନ୍ତି ? ନାହିଁ। ସେମିତି କିଛି ଘଟୁନାହିଁ।

ପ୍ରକୃତରେ ଆଜି ପର୍ଯ୍ୟନ୍ତ ପ୍ରଯୁକ୍ତି ବିଦ୍ୟା ହେଉ କିମ୍ବା ବୈଜ୍ଞାନିକ ଅନୁସନ୍ଧାନ ହେଉ, ସେସବୁ କିଛି ମଣିଷର ବୁଦ୍ଧି, ବିବେକ ଓ କଠିନ ପରିଶ୍ରମ ଦ୍ୱାରା ଉପଲବ୍ଧ ହୋଇଛି। କୌଣସି ଈଶ୍ୱର, ଗଡ୍ କିମ୍ବା ଆଲ୍ଲାଙ୍କ ପାଇଁ ରଚିତ ଧର୍ମଶାସ୍ତ୍ରରୁ ଭୌତିକ ସାଧନ ଗୁଡିକ ଉତ୍ପାଦନ ହୋଇନାହିଁ। ବୈଜ୍ଞାନିକମାନେ ଧର୍ମଶାସ୍ତ୍ରଗୁଡିକୁ ଅଲଗା ରଖି ପ୍ରକୃତି ଉପରେ ଗଭୀର ଅଧ୍ୟୟନ ଓ ଗବେଷଣା କରୁଥିବାରୁ ଆଜି ସାରା ଦୁନିଆରେ ବିଜ୍ଞାନର ଏତେ ଉନ୍ନତି ଘଟିଛି। ଧର୍ମଗୁରୁ

ଓ ପୂଜକମାନେ କୁହନ୍ତି "ଭକ୍ତି ସହିତ ଧର୍ମୀୟ କର୍ମକାଣ୍ଡ ପାଇଁ ଯଥେଷ୍ଟ ପରିମାଣରେ (ଯିଏ ଯେତେ ଅଧିକ ଦେଇପାରିବ) ଧନ ଆଦି ଦାନ କଲେ ଭଗବାନଙ୍କ କୃପା ଶୀଘ୍ର ପାଇବେ।"

ଧର୍ମଭୀରୁ ଲୋକମାନେ ବି ବୁଝନ୍ତି, ଗୁରୁ ଯାହା କହୁଛନ୍ତି ଠିକ୍ କଥା। କିଛି ପାଇବା ପାଇଁ କିଛି ତ୍ୟାଗ କରିବାକୁ ତ ପଡିବ। ମାଗଣାରେ କ'ଣ କିଛି ମିଳିବ ? ସେମାନେ କିନ୍ତୁ ତର୍କ ବୁଦ୍ଧି ଖର୍ଚ୍ଚ କରି ପ୍ରଶ୍ନ କରନ୍ତି ନାହିଁ ଯେ ମୁଁ ଦାନ ଦେବି କାହାକୁ ? ଦାନରୁ ଗଚ୍ଛିତ ଧନର ବ୍ୟବହାର କେଉଁଠି ଓ କିପରି ହେଉଛି ? ଭଗବାନଙ୍କ ନାମରେ ଧନ୍ଦା କରୁଥିବା ଆଜି କାଲି ବହୁ ସଂଖ୍ୟାରେ ଭଣ୍ଡ ବାବା ମାନଙ୍କର ପର୍ଦ୍ଦାଫାଶ ହେଉଛି। ସେମାନଙ୍କ ମଠ ଓ ଆଶ୍ରମମାନଙ୍କରେ ଏକତ୍ରିତ ହୋଇଥିବା ଦାନ ପାଣ୍ଠିର ହିସାବ ମିଳୁନି। ସେମାନଙ୍କ ଆଶ୍ରମରେ ହେଉଥିବା ଅନେକ ପ୍ରକାର କୁକର୍ମର ଲମ୍ବା ତାଲିକା ପ୍ରକାଶ ପାଉଛି। ତଥାପି ଭକ୍ତମାନଙ୍କର ଜ୍ଞାନଚକ୍ଷୁ ଖୋଲୁ ନାହିଁ।

ଭକ୍ତମାନଙ୍କୁ ଏତିକି ବୁଝାପଡୁନି ଯେ ଭଗବାନ ଯଦି କେବଳ ଭକ୍ତମାନଙ୍କୁ କୃପା କରନ୍ତି, ତେବେ ବିଭିନ୍ନ ଧର୍ମସ୍ଥଳକୁ ଯାଉଥିବାବେଳେ କିମ୍ବା ପୂଜା କରି ଫେରୁଥିବାବେଳେ ଯାନବାହାନର ଦୁର୍ଘଟଣା ଘଟୁଛି ଓ ସେଥିରେ ଅନେକ ଭକ୍ତମାନଙ୍କର ଅକାଳ ମୃତ୍ୟୁ ଘଟୁଛି କାହିଁକି ?ଧର୍ମସ୍ଥଳରେ ହିଁ ଭଗବାନଙ୍କ ଆଗରେ ଦଳାଚକଟା ହୋଇ ଭକ୍ତମାନେ ଧନଜୀବନ ହରାଉ ନାହାନ୍ତି କି ? ଭଗବାନଙ୍କୁ ଭକ୍ତି କରୁନଥିବା ଲୋକ ତ କେହି ସେଠାକୁ ଯାଆନ୍ତି ନାହିଁ।

ତେଣୁ ଏଇଠି ଦୁଇଟି ପ୍ରଶ୍ନ ଉଠୁଛି- ଯେଉଁମାନେ ମୃତ୍ୟୁବରଣ କରନ୍ତି, ସେମାନେ କ'ଣ ଭଗବାନଙ୍କୁ ଭକ୍ତି କରୁନଥିଲେ ? ଭକ୍ତି ନଥାଇ ଧର୍ମସ୍ଥଳକୁ ଗଲେ କ'ଣ ଭଗବାନ ଏଭଳି ମୃତ୍ୟୁଦଣ୍ଡ ଦିଅନ୍ତି ? କିଏ କହିବ ଭକ୍ତିର

ପରିମାଣ କାହା ମନରେ କେତେ ଅଛି ? ସାଧାରଣତଃ ଆମେ ସମାଜରେ ଦେଖୁଛୁ ବ୍ୟଭିଚାର, ଶୋଷଣ, ହତ୍ୟା ଆଦି କରୁଥିବା ଲୋକମାନେ ଅଚଳାଚଳ ସମ୍ପତ୍ତିର ମାଲିକ ହୋଇ ସମାଜରେ ସମ୍ମାନ ପାଉଛନ୍ତି । ଅଥଚ ଦିନରାତି ଭଗବାନଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କରୁଥିଲେ ବି ଅନେକ ଲୋକଙ୍କ ରୋଗ, ଶୋକ, ଅଭାବ ମେଣ୍ଟି ପାରୁନି । ଅନେକ ଭକ୍ତ ଭଗବାନଙ୍କୁ ପୂଜା ଓ ପ୍ରାର୍ଥନା କରି କରି ଜୀବନ ଶେଷ କରି ଦେଉଛନ୍ତି କିନ୍ତୁ ଜୀବନ ସାରା ଦୁଃଖ, କଷ୍ଟ ଆଦି ଭୋଗ କରୁଛନ୍ତି । ଏହା ସତ୍ତ୍ୱେ ଭକ୍ତର ଭଗବାନ ବୋଲି କହିବା କେତେ ଦୂର ଯୁକ୍ତି ସଙ୍ଗତ ?

********

# ଅନ୍ଧବିଶ୍ୱାସ କେବେ ଦୂରହେବ ?

ଏହି ପ୍ରଶ୍ନଟି କହିବା ଓ ଶୁଣିବା ପାଇଁ ସହଜ ଲାଗୁଥିଲେ ବି ଏହାର ଉତ୍ତର କାହାରି ପାଖରେ ନାହିଁ। ଅନ୍ଧବିଶ୍ୱାସର ଅର୍ଥ ସମସ୍ତେ ଜାଣନ୍ତି ଓ ବୁଝନ୍ତି ମଧ୍ୟ। ଆଉ ଏକ ମଜା କଥା ହେଉଛି ଯେ, ପୃଥିବୀର ଯେ କୌଣସି ଲୋକକୁ ଆପଣ ପଚାରନ୍ତୁ- ଆପଣ ଅନ୍ଧବିଶ୍ୱାସୀ କି ? ସେ ତୁରନ୍ତ ଉତ୍ତର ଦେବେ- ମୋଟେ ନୁହେଁ। ଏପରିକି ବାରମ୍ବାର ଅନ୍ଧବିଶ୍ୱାସ ଯୋଗୁଁ ଧୋକା ଖାଇଥିବା କିମ୍ବା ଠକି ହୋଇଥିବା ଲୋକମାନେ ବି ମାନୁନାହାନ୍ତି ଯେ, ସେ ଜଣେ ଅନ୍ଧବିଶ୍ୱାସୀ ଲୋକ। କାରଣ, ଧୋକା ଖାଇଥିବା କିମ୍ବା ଠକି ହୋଇଥିବାର ଅସଲ କାରଣ ସେମାନେ ଠିକ୍ ଭାବେ ବୁଝି ପାରିନଥା'ନ୍ତି।

ଭୌତିକ ଜଗତର ଦୃଶ୍ୟମାନ ଓ ବ୍ୟବହୃତ ଜିନିଷଗୁଡିକ ସମ୍ପର୍କରେ ପ୍ରତ୍ୟେକ ମଣିଷ ସମ୍ପୂର୍ଣ୍ଣ ଜ୍ଞାନ ପାଇବା ସମ୍ଭବ ନହେଲେ ବି ଅନ୍ୟମାନଙ୍କର ଅନୁଭବ ଏବଂ ବସ୍ତୁଟିର କାର୍ଯ୍ୟକୁଶଳତା ଆଦି ଦେଖି ବିଶ୍ୱାସ କରିହେବ। ତଥାପି ଯାନ୍ତ୍ରିକ ତ୍ରୁଟି ପରିଲକ୍ଷିତ ହେଲେ ଉତ୍ପାଦକଙ୍କୁ ଦାୟୀ କରାଯାଇପାରିବ। କ୍ଷତିପୂରଣ ପାଇଁ ଦାବି କରାଯାଇପାରିବ। ଅତିବେଶୀରେ ଆର୍ଥିକ କ୍ଷତିକୁ ବି ସହ୍ୟ କରିହେବ। ମୋଟ ଉପରେ ଏହିଭଳି ଅନ୍ଧବିଶ୍ୱାସକୁ ସୁଧାରି ହେବ। ଦ୍ୱିତୀୟ ଥର କୌଣସି ବସ୍ତୁକୁ ବ୍ୟବହାର ପାଇଁ ଆଣିବା ପୂର୍ବରୁ ତର୍କବିତର୍କ କରି, ପରୀକ୍ଷାନିରୀକ୍ଷା କରି ଠକି ନହେବା ପାଇଁ ଯଥେଷ୍ଟ ଯତ୍ନ ନିଆଯାଇପାରିବ।

ଅନ୍ୟ ପକ୍ଷରେ ଅଧିଭୌତିକ ଜଗତର ଯେତେକ କାଳ୍ପନିକ ସୁଖ, ଶାନ୍ତି ଓ ଲାଭ ସମ୍ପର୍କରେ ମଣିଷ ଧର୍ମଶାସ୍ତ୍ର ପଢି କିମ୍ବା ଧର୍ମଗୁରୁମାନଙ୍କଠାରୁ

ଶୁଣି ବିଶ୍ୱାସ କରୁଛି, ସେ ସବୁରେ କେତେ ସତ କେତେ ମିଛ ଅଛି, ଜାଣିବାର କୌଣସି ପଦ୍ଧତି ଉପଲବ୍ଧ ନାହିଁ। ବିନା ପ୍ରମାଣରେ କେବଳ ବିଶ୍ୱାସ କର, ଫଳ ପାଇବ ବୋଲି କୁହାଯାଏ। ଯିଏ କାକତାଳୀୟ ନ୍ୟାୟରେ ସଫଳ ହୋଇଯାଉଛି- ସେ ତ ଖୁସି ହେଉଛି, ତା' ସହିତ ଅନ୍ୟମାନଙ୍କୁ ବି ନିଜର ଅନୁଭବ କାହାଣୀକୁ ଅତିରଞ୍ଜିତ କରି କହି ବିଶ୍ୱାସ କରିବାକୁ ପ୍ରେରିତ କରିପାରୁଛି। ତାଙ୍କର ବିଶ୍ୱାସରେ ପ୍ରାମାଣିକ ସତ୍ୟ ନଥିଲେ ବି ଖୁବ୍ ଶୀଘ୍ର ପ୍ରସାର ଲାଭ କରୁଛି। ସେହି ମନସ୍ତାତ୍ତ୍ୱିକ କାରଣରୁ ସମାଜର କିଛି ବୁଦ୍ଧିଆ ଓ ଧୂର୍ତ୍ତ ପ୍ରବୃତ୍ତିର ଲୋକ ଆତ୍ମା, ପରମାତ୍ମା, ପୁନର୍ଜନ୍ମ, ସ୍ୱର୍ଗ, ନର୍କ, ମୋକ୍ଷ, ପ୍ରାରବ୍ଧ ଆଦି କାଳ୍ପନିକ ଶବ୍ଦ ପ୍ରୟୋଗ କରି ଜନସାଧାରଣଙ୍କୁ ଖୁବ୍ ସହଜରେ ପ୍ରଭାବିତ କରିଥା'ନ୍ତି। ସେମାନଙ୍କର ଭିତ୍ତିହୀନ କଥନକୁ ବିଶ୍ୱାସ କରି ନିଜର ଧନ, ସମୟ ଓ ଶକ୍ତିର ଅପଚୟ କରି, ପ୍ରତିବଦଳରେ କିଛି ବି ନପାଇ ମଧ୍ୟ ପ୍ରତିବାଦ କରନ୍ତି ନାହିଁ। ବରଂ କିଛି ନପାଇବାର ଅନ୍ୟାନ୍ୟ କାରଣ ଖୋଜିବସନ୍ତି। ଯଥା- (କ) ପୂର୍ବଜନ୍ମରେ ହୁଏତ କରିଥିବା ମନ୍ଦ କର୍ମ ଯୋଗୁଁ ଏହି ଜନ୍ମରେ ମୁଁ ଇପ୍ସିତ ଫଳ ପ୍ରାପ୍ତ କରିପାରୁନି। (ଖ) ଭାଗ୍ୟଲିଖନ କେ କରିବ ଆନ। ଅର୍ଥାତ୍, ମୋ ଭାଗ୍ୟରେ ଯାହା ଭୋଗ କରିବାକୁ ବିଧାତା ଲେଖିଦେଇଛି, ତାହା ହିଁ ତ ପାଇବି। (ଗ) ଏହି ଜନ୍ମରେ ଭଗବାନ ମୋତେ ଦୁଃଖ ଓ କଷ୍ଟ ଦେଇ ପରୀକ୍ଷା କରୁଛନ୍ତି। ମୁଁ ଦୁଃଖ କଷ୍ଟ ସହି ମଧ୍ୟ ଈଶ୍ୱର ଚେତନାକୁ ମାନି ଚଳିଲେ ମୋତେ ସ୍ୱର୍ଗ ପ୍ରାପ୍ତ ହେବ କିମ୍ବା ଆସନ୍ତା ଜନ୍ମରେ କୌଣସି ଇତର ପ୍ରାଣୀ ରୂପେ ଜନ୍ମଗ୍ରହଣ କରିବାକୁ ପଡିବନାହିଁ। ମଣିଷ ଜନ୍ମରୁ ମୋକ୍ଷ ପ୍ରାପ୍ତ ହୋଇ ଯଦି ସ୍ୱର୍ଗରେ ବାସ କରିବା ସୁଯୋଗ ମିଳିଯାଏ, ତେବେ ସବୁ ଚିନ୍ତାରୁ ମୁକ୍ତ ହୋଇଯିବି। ସେଠାରେ ଚିରଯୌବନ ଲାଭକରି,

ଦେବତାମାନଙ୍କ ସହ ସ୍ୱର୍ଗର ସୁରା ପାନକରି, ସୁନ୍ଦରୀ ଅପ୍‌ସରାମାନଙ୍କ ସହ ମୌଜମସ୍ତିରେ ଜୀବନ ବିତାଇପାରିବି। ଏହି ପାପୀ ସଂସାରରେ ଆଉ ଜନ୍ମଗ୍ରହଣ କରିବାକୁ ପଡିବ ନାହିଁ। ଯଦି ସ୍ୱର୍ଗରେ ସ୍ଥାନ ନମିଳିବ, ତଥାପି ଯଜ୍ଞ, ପୂଜା ଓ ପ୍ରାର୍ଥନା କରିଥିଲେ ପୃଥିବୀରେ ହିଁ କୌଣସି ଏକ ଉଚ୍ଚକୁଳର ଧନାଢ୍ୟ ପରିବାରରେ ଜନ୍ମ ହେବା ସୁନିଶ୍ଚିତ ହୋଇଯିବ। ହିନ୍ଦୁ ଧର୍ମଶାସ୍ତ୍ରରେ ଅଛି ପ୍ରାଣୀକୁ ୮୪ ଲକ୍ଷ ଯୋନିରେ ଜନ୍ମ ଗ୍ରହଣ କରିବାକୁ ପଡିଥାଏ। କିନ୍ତୁ ଯିଏ ଈଶ୍ୱରଙ୍କ ବର ପ୍ରାପ୍ତ ହୁଏ, ସେ ସର୍ଟକଟ୍ ମାରି ସିଧାସଳଖ ମଣିଷ ଜନ୍ମ ପାଇଥାଏ। ପୃଥିବୀରେ ଶ୍ରେଷ୍ଠ ଜନ୍ମ ହେଉଛି ମଣିଷ। ମୃତ୍ୟୁ ପରେ ସ୍ୱର୍ଗ ପ୍ରାପ୍ତି କିମ୍ବା ପୁନଶ୍ଚ ମଣିଷ ଜନ୍ମ ପାଇବା ପାଇଁ ଆବଶ୍ୟକ ସର୍ତ୍ତ ହେଉଛି- 'ତୁମେ ବିନା ତର୍କ ଓ ସନ୍ଦେହରେ ଧର୍ମ ବିଧାନକୁ ବିଶ୍ୱାସ କର। ଯେତେ ଦୁଃଖ, କଷ୍ଟ ହେଲେ ବି ପ୍ରତିବାଦ କରନାହିଁ।

ଏହିଭଳି ବିଶ୍ୱାସକୁ ନେଇ ଜୀବନ ଅତିବାହିତ କରୁଥିବା ମଣିଷମାନଙ୍କୁ ବୁଝେଇବା ଅସମ୍ଭବ ନହେଲେ ବି କଷ୍ଟକର ବ୍ୟାପାର। ତୁମର ବିଶ୍ୱାସ ସତ ନୁହେଁ, ଏହା ଅନ୍ଧବିଶ୍ୱାସ ବୋଲି କହିଲେ- ସେମାନେ ତୁମକୁ ହିଁ ସନ୍ଦେହ କରିବେ। ସେମାନେ ତୁମକୁ ଅବିଶ୍ୱାସପୂର୍ବକ ଘୃଣା ଓ ତିରସ୍କାର କରିବେ। ସୁଯୋଗ ପାଇଲେ ତୁମକୁ ହତ୍ୟା କରି ନିଶ୍ଚିହ୍ନ କରିଦେବାକୁ ବି ପଛେଇବେ ନାହିଁ। ଏହାର ଅନେକ ଉଦାହରଣ ଦେଖିବାକୁ ମିଳୁଛି। ପୃଥିବୀ ଇତିହାସରେ ଧାର୍ମିକବିଦ୍ୱେଷ ଯୋଗୁ ଯେତେ ସଂଖ୍ୟାରେ ନରସଂହାର ହୋଇଛି, ଅନ୍ୟ କୌଣସି ରାଜନୈତିକ କାରଣରୁ ସେତେ ହୋଇନାହିଁ ! ଆଜି ବି ଧାର୍ମିକ ଉନ୍ମାଦର ବିଭତ୍ସ କାଣ୍ଡ ସବୁଦେଶରେ ଦେଖିବାକୁ ମିଳୁଛି।

ମଣିଷ ସମାଜରୁ ଅନ୍ଧବିଶ୍ୱାସ କେବେ ଦୂର ହେବ ? ସମାଜରେ

ମାନବବାଦ କେବେ ଓ କିଭଳି ସ୍ଥାପନ ହୋଇପାରିବ ? ଏହିସବୁ ପ୍ରଶ୍ନକୁ ନେଇ ଦୁନିଆର ଅନେକ ବୁଦ୍ଧିବାଦୀ ବିଚାରକ ଚିନ୍ତା କରୁଛନ୍ତି । ପ୍ରତ୍ୟେକ ଦେଶର ହେତୁବାଦୀ ଗୋଷ୍ଠୀ ସମାଜର ଲୋକମାନଙ୍କୁ ବୈଜ୍ଞାନିକ ଚିନ୍ତନ କରିବା ପାଇଁ ପ୍ରେରିତ କରୁଛନ୍ତି । ଅଧିକାଂଶ ଲୋକ ଅନ୍ଧବିଶ୍ୱାସ କ'ଣ ଓ ତା'ର କୁପରିଣାମ କ'ଣ ବୁଝିପାରୁଛନ୍ତି । କିନ୍ତୁ ପିଲାଟି ବେଳୁ ଗଢି ଉଠିଥିବା ଅହେତୁକ ଭୟରୁ ନିଜକୁ ମୁକ୍ତ କରିପାରୁ ନାହାନ୍ତି । କାଳେ କିଛି ଅନିଷ୍ଟ ବା କ୍ଷତି ହୋଇଯିବାର ଭୟ ଯୋଗୁଁ ଯାହା ଯେମିତି ଚାଲିଛି, ତାହାକୁ ଆନମନା ଭାବେ ପାଳନ କରିଚାଲିଛନ୍ତି ।

ହେତୁବାଦୀ ପ୍ରଶ୍ନ ସମୂହ- ହେଉଛି :- ଧର୍ମ ନାମରେ ବ୍ୟବସାୟ ଚାଲିଛି କି ନାହିଁ ? ଧର୍ମ ନାମରେ ଜାତିଭେଦ ଭାବ ହେଉଛି କି ନାହିଁ ? ଧର୍ମ ନାମରେ ଶୋଷଣ ହେଉଛି କି ନାହିଁ ? ଧର୍ମ ଆଳରେ ଭ୍ରଷ୍ଟାଚାର ଓ ଅନାଚାର ଚାଲିଛି କି ନାହିଁ ? ଧର୍ମ ନାମରେ ସାମ୍ପ୍ରଦାୟିକ ହିଂସା ହେଉଛି କି ନାହିଁ ? ଉପରୋକ୍ତ ପ୍ରଶ୍ନଗୁଡିକର ଉତ୍ତରରେ ପ୍ରତ୍ୟେକ ଧାର୍ମିକ ବ୍ୟକ୍ତି 'ହଁ' କହିବ । ସେହି ବ୍ୟକ୍ତିମାନଙ୍କୁ ଯଦି ଅନ୍ୟ ଏକ ପ୍ରଶ୍ନ ପଚରାଯିବ ତେବେ ଧର୍ମକୁ ପରିତ୍ୟାଗ କରିବା ଉଚିତ୍ ନୁହେଁ କି ? ସେ ତୁରନ୍ତ ତାଙ୍କର ମତ ପରିବର୍ତ୍ତନ କରି ଉତ୍ତର ଦେବେ - 'ନାହିଁ । ଧର୍ମର ପରିଭାଷା ସେ ନିଜ ମତ ଅନୁସାରେ ଆପଣଙ୍କୁ ହୁଏତ ବୁଝେଇବାକୁ ଚେଷ୍ଟା କରିବେ, ଯାହାର ପ୍ରକୃତ ଅର୍ଥ ଆପଣ ବୁଝି ପାରିବେନି କିମ୍ବା ସେ ବୁଝେଇପାରିବେନି । କାରଣ, ସେ ନିଜେ ହିଁ ଧର୍ମର ଗୋଲକଧନ୍ଦାରୁ ମୁକ୍ତ ହୋଇପାରୁନାହାନ୍ତି ।

ଉପରୋକ୍ତ ଆଲୋଚନାରୁ ଆମ ମନରେ କିଛି ପ୍ରଶ୍ନ ଉଠୁଛି - (କ) ଯଦି ତଥାକଥିତ ଈଶ୍ୱର ଓ ସେହି ସମ୍ପର୍କିତ ଧର୍ମର ଅବଧାରଣା ମଣିଷ

ମନରେ ସୃଷ୍ଟି ହୋଇନଥା'ନ୍ତା, ତେବେ ଏହି ସଂସାର ମାନବବାଦୀ ବିଚାରଧାରା ଦ୍ୱାରା ପରିଚାଳିତ ହେଉନଥା'ନ୍ତା କି ? (ଖ) ଦୃଶ୍ୟମାନ ବସ୍ତୁଗୁଡିକୁ ଦେଖି, ଶୁଣି ଓ ଅନୁଭବ କରି ବିଶ୍ୱାସ କରିବା ଏବଂ ଅଦୃଶ୍ୟ ବସ୍ତୁକୁ ନଦେଖି, ନଶୁଣି କିମ୍ବା ଅନୁଭବ ନକରି ବିନା ପ୍ରମାଣରେ କେବଳ ବିଶ୍ୱାସ କରିବା କ'ଣ ଏକା କଥା ହୋଇପାରେ କି ? (ଗ) ଚକ୍ଷୁହୀନ ବ୍ୟକ୍ତିର ବିଶ୍ୱାସକୁ ଯଦି ଆମେ ମିଛ ହୋଇପାରେ ବୋଲି ମାନୁଛୁ, ତେବେ ମନର ଚକ୍ଷୁ ଅର୍ଥାତ୍ ଜ୍ଞାନହୀନ ବ୍ୟକ୍ତିର ବିଶ୍ୱାସକୁ ଆମେ ସତ ବୋଲି ମାନିବା କାହିଁକି ?

ଏହି ପ୍ରଶ୍ନଗୁଡିକର, ବିଜ୍ଞାନ ସମ୍ମତ ଓ ତର୍କସଙ୍ଗତ ଉତ୍ତର ଯଦି ଆମେ ଖୋଜି ପାଇବା ତେବେ ଅନ୍ଧବିଶ୍ୱାସ କେବେ ଦୂର ହେବ ହୁଏତ ଆମେ ଜାଣିପାରିବା ।

*******

# ଧାର୍ମିକ ଅସହିଷ୍ଣୁତା କାହିଁକି ?

***ବିଡମ୍ବନା ଯେ, କୌଣସି ଧର୍ମର ତଥାକଥିତ ସର୍ବଶକ୍ତିମାନ, ସର୍ବଜ୍ଞ ଓ ଦୟାଳୁ ଭଗବାନ ଏହି ମାନବ ସଂଘର୍ଷକୁ ରୋକିପାରୁନାହାନ୍ତି । ତେଣୁ ପ୍ରଶ୍ନ ଉଠୁଛି- ସତରେ କ'ଣ ଭଗବାନ ହିଁ ସମସ୍ତଙ୍କୁ ସୃଷ୍ଟି କରିଛନ୍ତି ?***

ଗୋଟିଏ ଘଟଣା । କର୍ଣ୍ଣାଟକ, କୃଷ୍ଣଗିରୀ ଜିଲ୍ଲା, କାରୁଭାନୁର ଗ୍ରାମର ଗୋଟିଏ ମନ୍ଦିରରେ ଧାର୍ମିକ ମେଳା ହେଉଥିଲା । ଅନେକ ଭକ୍ତଙ୍କ ଭିଡ ଭିତରେ ସେହି ଗ୍ରାମର ଜଣେ କୋଡିଏ ବର୍ଷୀୟ ଦଳିତ ଯୁବକ ଠାକୁର ଦର୍ଶନ ପାଇଁ ମନ୍ଦିର ଭିତରେ ପ୍ରବେଶ କଲା । ସେହି ଗ୍ରାମର କିଛି ଉଚ୍ଚଜାତିର ଯୁବକ ଏହା ଦେଖି ଦଳିତ ଯୁବକକୁ ମନ୍ଦିର ଭିତରୁ ଟାଣି ଆଣି ନିସ୍ତୁକ ମାଡ ଦେଲେ । ସେ କ୍ଷତବିକ୍ଷତ ହୋଇ ପିଇବାକୁ ପାଣି ମାଗିଲା । ଉକ୍ତ ଯୁବକମାନେ ପାଣି ବଦଳରେ ତା' ମୁହଁରେ ପରିସ୍ରା କରିଦେଲେ । କିଛି ସମୟ ପରେ କିଛି ସ୍ଥାନୀୟ ଲୋକଙ୍କ ସାହାଯ୍ୟରେ ସେ ପୋଲିସ ଥାନାକୁ ଯାଇ ଅଭିଯୋଗ କରିଛି । ତାକୁ ଭବିଷ୍ୟତରେ କେବେ କେଉଁଭଳି ନ୍ୟାୟ ମିଳିବ, ସେକଥା ଭବିଷ୍ୟତରେ ହିଁ ଜଣାପଡିବ । ଏଇଟା ଏକ ଛୋଟ ଉଦାହରଣ । ଦେଶ ଓ ଦୁନିଆରେ ଧାର୍ମିକ ବର୍ବରତା ଓ କଟ୍ଟରବାଦର ନୃଶଂସ ଉଦାହରଣ ହଜାର ସଂଖ୍ୟାରେ ଦେଖିବାକୁ ମିଳୁଛି । ଧାର୍ମିକ ଉନ୍ମାଦ ଭିତରେ ମାନବିକତା ଜଳିପୋଡି ନଷ୍ଟ ହୋଇଯାଉଛି ।

ଏଇଠି ପ୍ରଶ୍ନ ଉଠୁଛି- ଧର୍ମ ନାମରେ ଧର୍ମାନ୍ଧ ବ୍ୟକ୍ତିମାନଙ୍କ ଭିତରେ ହିଁ ଏଭଳି ଧାର୍ମିକ ଅସହିଷ୍ଣୁତା ଦେଖାଯାଉଛି କାହିଁକି ? ସମସ୍ତ ଧର୍ମ କହୁଛି- ଭଗବାନ ସମସ୍ତଙ୍କୁ ସୃଷ୍ଟି କରିଛନ୍ତି କିନ୍ତୁ ଏହି ତଥ୍ୟ ସହିତ ସମସ୍ତ ମାନବ ସମାଜ ଏକମତ ହୋଇପାରୁନାହାନ୍ତି । ବିଶେଷକରି ବିଜ୍ଞାନ ସଂପୂର୍ଣ୍ଣ ଭାବେ

ଏହାକୁ ନାକଚ କରୁଛି ଏବଂ ପ୍ରକୃତିର ବିବର୍ତ୍ତନବାଦ ଯୋଗୁ ସମସ୍ତେ ସୃଷ୍ଟି ହୋଇଥିବା କଥା ପ୍ରମାଣ ସହିତ ଉପସ୍ଥାପନ କରୁଛି । ଲେଖକ ଡନ କ୍ରାଉନ୍‌ଙ୍କ ମତରେ- ବିଜ୍ଞାନ ଓ ଧର୍ମ ଦୁହେଁ ସତ୍ୟକୁ ପ୍ରମାଣିତ କରିବା ପାଇଁ ଦୁଇପ୍ରକାର ଭାଷା ବ୍ୟବହାର କରୁଛନ୍ତି । ବୈଜ୍ଞାନିକ ଭାଷା ତଥ୍ୟ, ଫର୍ମୂଲା ଓ ପରିସଂଖ୍ୟାନ ଉପରେ, କିନ୍ତୁ ଧର୍ମର ଭାଷା କେବଳ ବିଶ୍ୱାସ ଓ କଳ୍ପନା ଉପରେ ସତ୍ୟକୁ ପ୍ରମାଣିତ କରିବାକୁ ଚାହୁଁଛି ।

ଆଦିମ ଯୁଗରେ ମାନବ ସମାଜ ପ୍ରାକୃତିକ ବସ୍ତୁଗୁଡିକୁ ପୂଜା କରୁଥିଲା । ସେମାନଙ୍କ ପାଇଁ ସୂର୍ଯ୍ୟ ଏକ ସ୍ୱତନ୍ତ୍ର ମହାନ ଶକ୍ତି ଥିଲା । ସମୟାନୁକ୍ରମେ ବିଭିନ୍ନ ମତ ଅନୁସାରେ ଅନେକ ପ୍ରକାର କାଳ୍ପନିକ ଦୈବୀ ଶକ୍ତି ସୃଷ୍ଟି ହେଲା । ସୂର୍ଯ୍ୟ ଏବଂ ପୃଥିବୀରେ ଅବସ୍ଥାନ କରୁଥିବା ପ୍ରାକୃତିକ ବସ୍ତୁ ବ୍ୟତୀତ ଅନେକ ଅଦୃଶ୍ୟ, ଅଲଭ୍ୟ ଦେବୀଦେବତାଙ୍କ କଳ୍ପନା କରାଗଲା । ବିଭିନ୍ନ ଦେଶରେ ଭିନ୍ନଭିନ୍ନ ଧର୍ମ ପ୍ରବର୍ତ୍ତକ ନିଜ ମତ ଓ ଧାରଣା ଅନୁସାରେ ଭଗବାନମାନଙ୍କୁ ସୃଷ୍ଟି କଲେ । ସେମାନଙ୍କ ସମର୍ଥକମାନେ ଧର୍ମପ୍ରବର୍ତ୍ତକମାନଙ୍କ ନିର୍ଦ୍ଦେଶ ଅନୁସାରେ ଧାର୍ମିକ କର୍ମକାଣ୍ଡ ପାଳନ କଲେ । ସେଥିପାଇଁ ସମସ୍ତେ ଭଗବାନ ଏକ ବୋଲି କହୁଥିଲେ ବି ଧାର୍ମିକ କର୍ମକାଣ୍ଡରେ ଭିନ୍ନତା ରହିଲା । ଏପରିକି ଧାର୍ମିକ କର୍ମକାଣ୍ଡରେ ପରସ୍ପର ବିରୋଧାଭାସ ଦେଖାଗଲା । ଧର୍ମ ସମ୍ପ୍ରଦାୟମାନଙ୍କ ଭିତରେ ଖାଇବା, ପିଇବା, ପିନ୍ଧିବା ଓ ବିବାହ ବ୍ୟବସ୍ଥାରେ ବି ସମାନତା ରହିଲା ନାହିଁ । କେତେକ ଧର୍ମରେ ଆମିଷ ଭୋଜନକୁ ବାରଣ ନାହିଁ । ଆଉ କେତେକ ଧର୍ମରେ ଆମିଷ ଭୋଜନ ଘୋର ଅପରାଧ । ଆମିଷ ଖାଦ୍ୟରେ ବି ବାଛବିଚାର ରହୁଛି । କେଉଁ ପଶୁ ଓ ପକ୍ଷୀର ମାଂସ ନିଜ ଧର୍ମରେ ଖାଇପାରିବେ, ତାହା ଧର୍ମଶାସ୍ତ୍ର ଅନୁସାରେ ନିର୍ଦ୍ଧାରଣ ହୁଏ । ସେହିଭଳି ନିରାମିଷ ଖାଦ୍ୟରେ ବି ପିଆଜ ଓ ରସୁଣ ଭଳି କିଛି ଉଦ୍ଭିଦଜାତ ବସ୍ତୁକୁ କିଛି

ଧର୍ମ ବାରଣ କରୁଛନ୍ତି । କେତେକ ଧର୍ମରେ ମଦ୍ୟପାନ, ଗଞ୍ଜେଇ ବା ଭାଙ୍ଗ ସେବନ ଧର୍ମସମ୍ମତ, ଆଉ କେତେକ ଧର୍ମରେ ସମ୍ପୂର୍ଣ୍ଣ ବର୍ଜିତ । ପିନ୍ଧିବା ବସ୍ତ୍ରରେ ବିଭିନ୍ନ ରଙ୍ଗକୁ ନେଇ ନିର୍ଦ୍ଦେଶ ରହିଛି । ଗୋଟିଏ ଧର୍ମରେ ଧଳାରଙ୍ଗ, ଅନ୍ୟ ଏକ ଧର୍ମରେ କଳା ଓ ଆଉ ଏକ ଧର୍ମରେ ଗେରୁଆ ରଙ୍ଗ ବସ୍ତ୍ର ଶୁଭ ବୋଲି ମାନ୍ୟତା ଅଛି ।

ବରବଧୂଙ୍କ ବିବାହ ପଦ୍ଧତି ବି ଧାର୍ମିକ ନିର୍ଦ୍ଦେଶ ଅନୁସାରେ ଅଲଗାଅଲଗା ଭାବେ ସମ୍ପନ୍ନ କରାଯାଏ । ଏତିକି ପର୍ଯ୍ୟନ୍ତ ସବୁ ଠିକ୍ ବୋଲି କୁହାଯାଇପାରିବ । କିନ୍ତୁ ସମସ୍ୟା ଦେଖାଗଲା- ଯେତେବେଳେ ସମସ୍ତ ଧର୍ମ ସମ୍ପ୍ରଦାୟ ବା ଗୋଷ୍ଠୀର ଲୋକମାନେ ନିଜ ଭଗବାନ ଓ ଧର୍ମକୁ ଅନ୍ୟ ଧର୍ମର ଭଗବାନଙ୍କଠାରୁ ଶ୍ରେଷ୍ଠ ବୋଲି ବିଶ୍ୱାସ କଲେ । ଆମ ପୂଜା ଓ ଆରାଧନା ପଦ୍ଧତି ଠିକ୍ କିନ୍ତୁ ଅନ୍ୟମାନଙ୍କର ଠିକ୍ ନୁହେଁ ବୋଲି ପ୍ରଚାର ହେଲା । ଆମ ଧର୍ମର ପ୍ରତିଷ୍ଠା ପାଇଁ ସମର୍ଥକମାନଙ୍କ ସଂଖ୍ୟା ବୃଦ୍ଧି କରିବା ଆବଶ୍ୟକ । ସେଥିପାଇଁ ଅନ୍ୟ ଧର୍ମରେ ଥିବା ଲୋକମାନଙ୍କୁ ପ୍ରବର୍ତ୍ତାଇ, ନିଜ ଧର୍ମ ଗ୍ରହଣ କରିବାକୁ କଳେ ବଳେ କୌଶଳେ ପ୍ରଚେଷ୍ଟା କରାଗଲା । ଏହି ମନୋଭାବ ଯୋଗୁ ଦୁନିଆର ପ୍ରାୟ ପ୍ରତ୍ୟେକ ଦେଶରେ ଧାର୍ମିକ ସଂଘର୍ଷ ସୃଷ୍ଟି ହେଲା । ପରିଣାମ ସ୍ୱରୂପ ବିଗତ ବର୍ଷଗୁଡିକରେ ଲକ୍ଷଲକ୍ଷ ଲୋକ ଧର୍ମକୁ ନେଇ ପ୍ରାଣ ହରାଇଛନ୍ତି । ହଜାର ହଜାର ଲୋକ ଧର୍ମ ନାମରେ ସହିଦ ହେଉଛନ୍ତି । ବିଡମ୍ବନା ଯେ, କୌଣସି ଧର୍ମର ତଥାକଥିତ ସର୍ବଶକ୍ତିମାନ, ସର୍ବଜ୍ଞ ଓ ଦୟାଳୁ ଭଗବାନ ଏହି ମାନବ ସଂଘର୍ଷକୁ ରୋକିପାରୁନାହାନ୍ତି । ତେଣୁ ପ୍ରଶ୍ନ ଉଠୁଛି- ସତରେ କ'ଣ ଭଗବାନ ହିଁ ସମସ୍ତଙ୍କୁ ସୃଷ୍ଟି କରିଛନ୍ତି ? ତେବେ ସେହି ଭଗବାନ ନିଜ ସନ୍ତାନମାନଙ୍କ ମନରେ ଅସହିଷ୍ଣୁତା ବଦଳରେ ସହନଶୀଳତା, ସ୍ନେହ, ପ୍ରେମ ଓ ଦୟା ଭରି ଦେଉନାହାନ୍ତି କାହିଁକି ?

******

# ଭବିଷ୍ୟତରେ ନାସ୍ତିକବାଦର ସ୍ଥିତି

ଆସ୍ତିକତା ଓ ନାସ୍ତିକତା ଭିତରେ ଯୁଗଯୁଗରୁ ସଂଘର୍ଷ ଲାଗି ରହିଛି। କେଉଁଟି ଠିକ୍, କେଉଁଟି ଭୁଲ୍ ନିର୍ଣ୍ଣୟ କରିବା ପାଇଁ ଦୁଇପକ୍ଷର ବାକ୍ୟୁଦ୍ଧ ସୀମା ଲଙ୍ଘନ କରି ସଶସ୍ତ୍ର ଯୁଦ୍ଧ ପର୍ଯ୍ୟନ୍ତ ଲମ୍ବିଯାଉଛି। ଏହାଦ୍ୱାରା ଅସଂଖ୍ୟ ଜନଜୀବନ ହାନି ହେଉଛି। ପୌରାଣିକ, ଐତିହାସିକ ଏବଂ ଆଧୁନିକ ଯୁଗରେ ଏକାଭଳି ଆସ୍ତିକ ଓ ନାସ୍ତିକମାନଙ୍କ ସମସ୍ୟା ଥିଲା ଏବଂ ରହିଛି। ପୌରାଣିକ ଯୁଗରେ ଦେବତାମାନଙ୍କୁ ସିଧା ବିରୋଧ କରୁଥିବା ଅସୁରମାନେ ଥିଲେ। ଅସୁରମାନେ ନାସ୍ତିକ ଥିଲେ ବି ଦେବୀଦେବତାଙ୍କୁ ଦେଖିପାରୁଥିଲେ, ତେବେ କେଉଁ କାରଣରୁ ବିରୋଧ କରୁଥିଲେ, ସେସବୁର ବର୍ଣ୍ଣନା କେଉଁଠି ନାହିଁ। ପ୍ରଶ୍ନ ଉଠୁଛି- ଭଗବାନ ଯଦି ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ଓ ମଙ୍ଗଳକର୍ତ୍ତା ତେବେ ଅସୁରମାନଙ୍କୁ ବି ସେ ସୃଷ୍ଟି କରିଥିବା ସମ୍ଭବ। ସେ ସୃଷ୍ଟି କରିଥିବା ଅସୁରମାନଙ୍କ ପ୍ରତି ଅବିଚାର କରୁଥିବା ବି ସମ୍ଭବ ନୁହେଁ। ତେବେ ଅସୁରମାନେ ଭଗବାନ ବା ତାଙ୍କର ବଂଶଧରମାନଙ୍କୁ ଘୃଣା କରୁଥିଲେ କାହିଁକି ?

ଇତିହାସ ଯୁଗ ବେଳକୁ କୌଣସି ଦେବୀଦେବତା ପୃଥିବୀରେ ଦେଖାଗଲେ ନାହିଁ। ଏପରିକି ତାଙ୍କର ସ୍ଥିତି ସମ୍ପର୍କରେ କୌଣସି ପ୍ରମାଣ ମିଳିଲା ନାହିଁ। ପୁରାଣ ଯୁଗରୁ ଲେଖାଯାଇଥିବା କିଛି ଧର୍ମଗ୍ରନ୍ଥ ପଢି କେତେକଣ ଧର୍ମଗୁରୁ ଲୋକମାନଙ୍କୁ ବୁଝେଇଦେଲେ ଯେ- ବିଶ୍ୱାସ କର, ଭଗବାନ ଥିଲେ ଓ ଏବେ ବି ଅଛନ୍ତି। ଭଗବାନ ନଥିଲେ ଏ ଦୁନିଆ ସୃଷ୍ଟି ହୋଇଥାନ୍ତା କେମିତି ? ପ୍ରକୃତିକୁ ନିୟନ୍ତ୍ରଣ କରୁଛି କିଏ ? ଏଭଳି ପ୍ରଶ୍ନର ଉତ୍ତର କାହାରି ପାଖରେ ନଥିଲା। କାରଣ, ବିଜ୍ଞାନର ବିକାଶ ହୋଇନଥିଲା। ତଥାପି ସେ ଯୁଗରେ ଜନ୍ମଗ୍ରହଣ କରିଥିବା ଗୌତମ ବୁଦ୍ଧ, ଋଷି ଚାର୍ବାକ ଆଦି ନାସ୍ତିକ ଥିଲେ। ଧର୍ମଶାସ୍ତ୍ରର ତଥ୍ୟ ବିଜ୍ଞାନସମ୍ମତ ନଥିଲେ ବି ତର୍କ ଓ ଯୁକ୍ତିସଙ୍ଗତ ତଥ୍ୟ ଦ୍ୱାରା

ଆସ୍ତିକମାନଙ୍କ ମତକୁ ଖଣ୍ଡନ କରୁଥିଲେ । ଏହା ଦ୍ୱାରା ମତ ପାର୍ଥକ୍ୟ ହେଉଥିଲା ଏବଂ ଦୁଇଦଳ ଭିତରେ ମରଣାନ୍ତକ ସଂଘର୍ଷ ହେଉଥିଲା । ଫର୍କ ଏତିକି ଯେ, ଦେବତା ଓ ଅସୁରଙ୍କ ବଦଳରେ ସେମାନଙ୍କ ଭକ୍ତମାନେ ଲଢୁଛନ୍ତି ।

ସମୟ ସହିତ ତାଳ ଦେଇ ପରିସ୍ଥିତି ବଦଳି ଯାଉଛି । ସବୁବେଳେ ନୂତନ ଯୋଜନା ଓ ନୂତନ କାର୍ଯ୍ୟପ୍ରଣାଳୀର ଆବଶ୍ୟକତା ପଡୁଛି । ଧାର୍ମିକ ଗ୍ରନ୍ଥସବୁ ଏହି ପ୍ରଣାଳୀରେ ବାଧା ସୃଷ୍ଟି କରୁଛନ୍ତି । କାରଣ, ସେଗୁଡିକ ଦାବି କରୁଛନ୍ତି- ଏହା ସ୍ୱୟଂ ଭଗବାନଙ୍କ ବାଣୀ, ତେଣୁ ଅନ୍ତିମ ସତ୍ୟ । ଧର୍ମଗ୍ରନ୍ଥ ସ୍ୱତନ୍ତ୍ର ଚିନ୍ତନ ଓ ପ୍ରବର୍ତ୍ତନ ଦୁଇଟିକୁ ବାଧିତ କରିଦେଉଛି । ମଜାକଥା ହେଉଛି, ଯେଉଁମାନେ ଆଗାମୀ ଯୁଗରେ ନିଜ ଯୁଗର ଧର୍ମ ସଂସ୍ଥାପକ ବୋଲି ପରିଚିତ ହୁଅନ୍ତି, ସେହିମାନେ ନିଜ ଯୁଗରେ ହିଁ ଧର୍ମଦ୍ରୋହୀ ଆଚରଣ କରନ୍ତି । କାରଣ ସେମାନେ ପୂର୍ବରୁ ସେହି ଧର୍ମ ସମ୍ପ୍ରଦାୟରେ ଥିବା କିଛି ଧାର୍ମିକ ବିଚାରକୁ ସଂଶୋଧନ କରି ନିଜ ମତ ପ୍ରଚାର କରୁଛନ୍ତି । ଏପରିକି କିଛି ପୁରୁଣା ପରମ୍ପରାକୁ ପରିବର୍ତ୍ତନ କରି ନୂଆ ପରମ୍ପରା ଚାଲୁ କରିଦିଅନ୍ତି । କ୍ରାନ୍ତିକାରୀ ନାସ୍ତିକବାଦୀମାନେ କିନ୍ତୁ ସମସ୍ତ ପୁରୁଣା ଅନୁପଯୋଗୀ ପରମ୍ପରା ତ୍ୟାଗକରି ନୂଆ ଯିଜନା ସମାଜରେ ପ୍ରଚଳନ କରିବାକୁ ପ୍ରୟାସ କରିଥାନ୍ତି । ସେଥି ପାଇଁ ନାତିକତା ସର୍ବଦା ନୂତନ ଆବିଷ୍କାର ଏବଂ ପ୍ରଗତିର ଭିତ୍ତିଭୂମି ସୃଷ୍ଟି କରିଥାଏ । ଏସିଆ ଓ ଆଫ୍ରିକାର ପୁରୁଣା ସଭ୍ୟତା ସହିତ ଆଧୁନିକ ସଭ୍ୟତାର ମିଳନ ଏତେ ଜଟିଳ ହୋଇପଡିଛି ଯେ, ବର୍ତ୍ତମାନ ଅନେକ ଦେଶର ମାନବ ସମାଜରେ ଏକ ଅବ୍ୟବସ୍ଥିତ ପରିସ୍ଥିତି ସୃଷ୍ଟି କରିଛି । ପୁରୁଣା ସଭ୍ୟତାକୁ ସମ୍ପୂର୍ଣ୍ଣ ଭାବେ ତ୍ୟାଗ କିମ୍ବା ନୂତନ ସଭ୍ୟତାକୁ ସମ୍ପୂର୍ଣ୍ଣ ଭାବେ ଗ୍ରହଣ କରିପାରୁନାହାନ୍ତି । ସେଥିପାଇଁ ଯେଉଁ ଦେଶରେ ଧାର୍ମିକ, ସାଂସ୍କୃତିକ, ଭୌତିକ ଓ ପ୍ରଯୁକ୍ତିବିଦ୍ୟାର

କ୍ରାନ୍ତି ସୃଷ୍ଟି ହୋଇ ସେଠିକା ଲୋକମାନଙ୍କୁ ଜଡତାରୁ ମୁକ୍ତ ହେବା ପାଇଁ ସଚେତନ କରିଦେଇଛି, ସେହି ଦେଶମାନଙ୍କ ଅପେକ୍ଷା ଆଜି ଏସିଆ ଓ ଆଫ୍ରିକାର ଅବ୍ୟବସ୍ଥିତ ସଭ୍ୟତାକୁ ନାସ୍ତିକବାଦର ବେଶୀ ଆବଶ୍ୟକତା ରହିଛି ।

ଯଦିଓ ନୂତନ ସଭ୍ୟତା ଅପେକ୍ଷା ପୁରାତନ ସଭ୍ୟତାକୁ ନାସ୍ତିକବାଦର ଆବଶ୍ୟକତା ବେଶୀ ତଥାପି ନାସ୍ତିକବାଦର ଆବଶ୍ୟକ ପ୍ରତ୍ୟେକ ସଭ୍ୟତାକୁ ରହିଛି । ଯେଉଁ ଦେଶଗୁଡିକୁ ବିକଶିତ କୁହାଯାଉଛି, ସେଗୁଡିକ ବୈଷୟିକ, ଭୌତିକ ଏବଂ ବୈଜ୍ଞାନିକ ଦୃଷ୍ଟିକୋଣରେ ବହୁତ ଅଗ୍ରଗତି କରିଛନ୍ତି । ଏତିକି ପର୍ଯ୍ୟନ୍ତ ସେମାନଙ୍କୁ ସାଧୁବାଦ ଦିଆଯାଇପାରିବ । କିନ୍ତୁ ଏହି ବିକଶିତ ଦେଶମାନଙ୍କର ଶାସକମାନଙ୍କ ଦ୍ୱାରା ଅନ୍ୟସବୁ ଛୋଟ ଓ ବିକାଶଶୀଳ ଦେଶମାନଙ୍କୁ ଶୋଷଣ କରିବା ଘଟଣା ମଧ୍ୟ କମ୍ ଚିନ୍ତାଜନକ ନୁହେଁ । ଏହାର ପ୍ରମୁଖ କାରଣ ହେଉଛି ସେମାନଙ୍କ ଦୃଷ୍ଟିକୋଣ ସାମାଜିକ ନୁହେଁ । ସେମାନଙ୍କ ହାତକୁ ଆସିଥିବା ବୈଜ୍ଞାନିକ କ୍ଷମତାର ଅପବ୍ୟବହାର ମାନବ ଜୀବନ ପାଇଁ ଘୋର ବିପଦ ସୃଷ୍ଟି କରିଛି । ପ୍ରକୃତରେ ନାସ୍ତିକତା ମଧ୍ୟ ଏକ ବିଜ୍ଞାନ । ଏହି ବିଜ୍ଞାନ ମାନବଜାତି ପାଇଁ ସମ୍ପୂର୍ଣ୍ଣ ସାମାଜିକ ଉତ୍ତରଦାୟିତ୍ୱ ଅନୁଭବ କରୁଛି । ସାଧାରଣ ବିଜ୍ଞାନ ଅପେକ୍ଷା ସାମାଜିକ ବିଜ୍ଞାନ ଉପରେ ବେଶୀ ଦୃଷ୍ଟି କେନ୍ଦ୍ରିତ କରୁଛି । ଯଦି ପ୍ରାଚୀନ ସଭ୍ୟତାକୁ ଆମେ ଅନ୍ଧବିଶ୍ୱାସୀ ବୋଲି କହିବା ତେବେ ଆଧୁନିକ ସଭ୍ୟତାକୁ ଅସାମାଜିକ ବୋଲି କହିପାରିବା ।

ନାସ୍ତିକତାର ଦାୟିତ୍ୱ ଉଭୟ ସଭ୍ୟତାର ଭୁଲ ପରମ୍ପରାକୁ ସୁଧାରି ଉଭୟଙ୍କୁ ଏକ ନୂତନ ମାନବ ସଭ୍ୟତା ଆଡକୁ ଆଗେଇନେବା ଯେଉଁଥିରେ ଜାତି, ଧର୍ମ, ଦେଶ, ବର୍ଗ ଏବଂ ସଂସ୍କୃତିର ପାରମ୍ପରିକ ଅନୁପଯୋଗୀ ବନ୍ଧନ

ନଥିବ । ଅନେକ ମାନବତାବାଦୀ, ବୁଦ୍ଧିବାଦୀ ଓ ହେତୁବାଦୀ ଲୋକ ମାନବବାଦ ପ୍ରତିଷ୍ଠା କରିବାକୁ ଯଥେଷ୍ଟ ପ୍ରୟାସ କରିଥିଲେ ମଧ୍ୟ ସଫଳ ହୋଇନାହାନ୍ତି । କାରଣ, ସେମାନେ ଅଣରାଜନୈତିକ ଦଳର ଲୋକ । ଆଧୁନିକ ଯୁଗରେ ରାଜନୀତି ହିଁ ସବୁଠାରୁ ବଡ ଶକ୍ତି । ସମାଜରେ ଅବ୍ୟବସ୍ଥା ବା ଅରାଜକତା ଦେଖାଦେଲେ ରାଜନେତାମାନଙ୍କ ଦ୍ୱାରା ଗଠିତ ସରକାରଙ୍କୁ ଆମେ ଦୋଷ ଦେଉଛୁ । ସରକାରୀ ସ୍ତରରେ ରହିଥିବା ମନ୍ତ୍ରୀ, ନେତା ଓ ଅଫିସରମାନେ ଯଦି ମାନବବାଦୀ ବିଚାରଧାରାକୁ ମାନୁନଥିବେ ତେବେ ସମାଜରେ ମାନବବାଦ ପ୍ରତିଷ୍ଠା ଦିବାସ୍ୱପ୍ନ ହୋଇ ରହିଥିବ । ଆଧୁନିକ ଯୁଗରେ ଲୋକତନ୍ତ୍ରର ଏକ ଅଲଗା ଆକର୍ଷଣ ଥାଏ । କିନ୍ତୁ ଦଳୀୟ ବା ପାର୍ଟି ବ୍ୟବସ୍ଥା ରାଜନୀତିରେ ଏକ ବିକୃତ ରୂପ ଧାରଣ କରିଛି । ନିଜ ପାର୍ଟି ପାଇଁ ଲୋକମାନଙ୍କ ପାଗଳପଣ ଯୋଗୁ ଲୋକତନ୍ତ୍ର ଆଜି ଅସହାୟ । ଲୋକତନ୍ତ୍ର ନାମରେ ହେଉଥିବା ଖେଳରେ ଶାସକ ଦଳ ଓ ବିପକ୍ଷ ଦଳର ନିରୀହ ଜନତା ହିଁ ଶୋଷଣର ଶିକାର ହେଉଛନ୍ତି । ପାର୍ଟି ସଦସ୍ୟମାନଙ୍କ ଅନୈତିକ କାର୍ଯ୍ୟକଳାପ ଯୋଗୁ ସଚ୍ଚୋଟ, ଦେଶଭକ୍ତ ଓ ବୁଦ୍ଧିଜୀବୀ ଲୋକମାନେ ରାଜନୀତିରେ ପଶିବାକୁ ଭୟ କରୁଛନ୍ତି । ଶାସନ ଡୋରି ରହୁଛି ଅନ୍ଧବିଶ୍ୱାସୀ, ଭ୍ରଷ୍ଟାଚାରୀ ଓ ଶୋଷକ ନେତାଙ୍କ ହାତରେ । ଅଳ୍ପ କିଛି ସଚ୍ଚୋଟ ଓ ଦେଶଭକ୍ତ ନେତା ଚାହିଁଲେ ବି ସେମାନଙ୍କ କ୍ଷମତା ସୀମିତ କରିଦିଆଯାଉଛି । ସମାଜରେ ସଚେତନତା ଜାଗ୍ରତ କରିବା ପାଇଁ ବର୍ତ୍ତମାନ ନାସ୍ତିକତା କୌଣସି ପାର୍ଟି ବା ଦଳଗତ ରାଜନୀତିକୁ ସମର୍ଥନ ନକରି ଦଳବିହୀନ ଲୋକତନ୍ତ୍ର ଭିତରେ ଗତି କରୁଛି । ଭାରତର ବିଭିନ୍ନ ଅଣରାଜନୈତିକ ସଂଗଠନ ମାଧ୍ୟମରେ ହେତୁବାଦ, ମାନବବାଦ, ତର୍କଶୀଳତା ଇତ୍ୟାଦିର ପ୍ରଚାର ପ୍ରସାର ଚାଲିଛି । ସମାଜର ସବୁସ୍ତର ଜନତା ଏହି ବିଚାରରେ ଧୀରେ ଧୀରେ ଯୋଗଦେଉଛନ୍ତି । ମାନବିକ ଅଧିକାର ପାଇଁ ମଧ୍ୟ ସଂଘର୍ଷ ଆରମ୍ଭ ହେଲାଣି ।

ଆମେ ବର୍ତ୍ତମାନ ସେହିଦିନର କଳ୍ପନା କରିବା, ଯେଉଁଦିନ ନାସ୍ତିକ ସିଦ୍ଧାନ୍ତ ଅନୁସାରେ ସଂଯୁକ୍ତ ରାଷ୍ଟ୍ର ସଂଘକୁ ସଂଯୁକ୍ତ ଲୋକସଂଘରେ ପରିବର୍ତ୍ତନ କରିବା ଅନିବାର୍ଯ୍ୟ ହୋଇଯିବ। ଯେଉଁଦିନ ଯୁଦ୍ଧଖୋର ଦୁନିଆକୁ ଶାନ୍ତିପ୍ରିୟ ଦୁନିଆରେ ପରିବର୍ତ୍ତନ କରିବାକୁ ସମସ୍ତେ ସହଯୋଗ କରିବେ। ଯେଉଁଦିନ ମାନବର ଗୋଲାମୀ ବେଡି କଟିବ ଓ ସେ ସ୍ୱାତନ୍ତ୍ର୍ୟର ଖୁସି ପାଇବ। ଯେଉଁଦିନ ଧାର୍ମିକ ଭିତ୍ତିହୀନ ବିଶ୍ୱାସ ଦୁନିଆରୁ ଲୋପ ପାଇବ ଏବଂ ଲୋକମାନେ ବାସ୍ତବିକ ଦୁନିଆକୁ ଖୋଲାମନରେ ଉପଭୋଗ କରିବେ। ସେଦିନ ଆଉ ନାସ୍ତିକବାଦ ବୋଲି କିଛି ରହିବ ନାହିଁ। ଆସ୍ତିକବାଦ ନରହିଲେ, ନାସ୍ତିକବାଦର ଆବଶ୍ୟକତା କ'ଣ ?

******

# ମିଡ୍‌ବ୍ରେନ ଆକ୍ଟିଭେସନ : ଏକ ଗୋଲକ ଧନ୍ଦା

ପୃଥିବୀର ପ୍ରତ୍ୟେକ ଦେଶର ପ୍ରତ୍ୟେକ ସମାଜରେ ଅନେକ ପ୍ରକାର ବଦ୍ଧମୂଳ ଧାରଣା ଭରି ରହିଛି । ପ୍ରକୃତି ଓ ଜୀବନ ସମ୍ପର୍କରେ ଅଜ୍ଞାନ ବ୍ୟକ୍ତିମାନେ ବିଭିନ୍ନ ଭୁଲ ଧାରଣା ସୃଷ୍ଟି କରିଥିଲେ । କାଳକ୍ରମେ ମଣିଷ ବୁଦ୍ଧିର ବିକାଶ ଏବଂ ବିଜ୍ଞାନର ପ୍ରଗତି ଯୋଗୁ ଅନେକ ଭୁଲ୍ ଧାରଣା ସମାପ୍ତ ହୋଇ ନୂତନ ଚିନ୍ତନ ଜାଗ୍ରତ ହୋଇଛି । ସତ ଲାଗୁଥିବା ବିଶ୍ୱାସ ଗୁଡ଼ିକ ଅନ୍ଧବିଶ୍ୱାସ ବା ଭିତ୍ତିହୀନ ବିଶ୍ୱାସରେ ପରିବର୍ତ୍ତନ ହୋଇଛି । ଆଧୁନିକ ଯୁଗରେ ଭୂତ, ପ୍ରେତ, ଡାହାଣୀ ଆଦିର ସ୍ଥିତିକୁ ବୈଜ୍ଞାନିକମାନେ ଗବେଷଣା କରି ମିଥ୍ୟାବୋଲି ପ୍ରମାଣିତ କରିସାରଇଲେଣି । ରାସ୍ତାରେ ବିଲେଇଟିଏ ରାସ୍ତାକାଟି ଚାଲିଗଲେ, ଆଜି ଅନେକ ବ୍ୟକ୍ତି ଅଶୁଭ ହେବାର ସମ୍ଭାବନାକୁ ଅସ୍ୱୀକାର କଲେଣି । ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣ ଏକ ଖଗୋଳୀୟ ଘଟଣା, ରାହୁ ଓ କେତୁଙ୍କ ଯୋଗୁ ନୁହେଁ ବୋଲି ସ୍କୁଲ ପିଲାମାନେ ବି ବୁଝିଗଲେଣି । ଜ୍ୟୋତିଷମାନଙ୍କ ଦ୍ୱାରା ଗଣନା କରି କୁହାଯାଇଥିବା ଭବିଷ୍ୟବାଣୀ ଅନେକ କ୍ଷେତ୍ରରେ ଭୁଲ୍ ପ୍ରମାଣିତ ହୋଇଛି । ୧୯୭୫ ମସିହାର ସେପ୍‌ଟେମ୍ବର-ଅକ୍ଟୋବର ମାସରେ ଚିକାଗୋ ସହରରେ ୧୮୬ଜଣ ବୈଜ୍ଞାନିକ ଭିତରେ ଭାରତର ଡ. ଏସ୍. ଚନ୍ଦ୍ରଶେଖର ଏବଂ ୧୮ଜଣ ନୋବେଲ ପୁରସ୍କାର ପାଇଥିବା ବିଶିଷ୍ଟ ବୈଜ୍ଞାନିକ ଘୋଷଣା କଲେ- ଫଳିତ ଜ୍ୟୋତିଷରେ କୌଣସି ବୈଜ୍ଞାନିକ ତଥ୍ୟ ନାହିଁ । ଏହି ଖବର ଆମେରିକାରୁ ପ୍ରକାଶିତ 'ଦ ହ୍ୟୁମାନିଷ୍ଟ' ପତ୍ରିକାରେ ପ୍ରକାଶ ପାଇଥିଲା ।

ବିଡମ୍ବନା ହେଉଛି- ଆଜି ବି ଅନ୍ଧବିଶ୍ୱାସକୁ ସୃଷ୍ଟି କରୁଥିବା ଏବଂ ତାହାକୁ ବିଭିନ୍ନ ଢଙ୍ଗରେ ପ୍ରଚାର-ପ୍ରସାର କରୁଥିବା ଲୋକମାନଙ୍କ ସଂଖ୍ୟା

କମ୍ ହେବା ପରିବର୍ତ୍ତେ ବୃଦ୍ଧି ପାଇବାରେ ଲାଗିଛି । ବିଜ୍ଞାନ ଯୋଗୁଁ ଉଦ୍ଭାବନ ହୋଇଥିବା ଟିଭି, ରେଡିଓ, ମୋବାଇଲ ଫୋନ୍, କମ୍ପ୍ୟୁଟର ଓ ଇଣ୍ଟରନେଟକୁ ଦୁରୁପଯୋଗ କରି ନିତି ନୂଆନୂଆ ଅନ୍ଧବିଶ୍ୱାସ ସୃଷ୍ଟି କରୁଛନ୍ତି । କାତକ ଗଣନା ବି କମ୍ପ୍ୟୁଟର ଦ୍ୱାରା ହେଉଥିବାରୁ ଗ୍ରାହକମାନଙ୍କର ଜ୍ୟୋତିଷ ବିଦ୍ୟା ପ୍ରତି ବିଶ୍ୱାସ ବଢିଯାଇଛି । ଗତ କିଛିବର୍ଷ ହେଲା ଆମ ଦେଶରେ ଆଉ ଏକ ଭ୍ରମକାଲ ପ୍ରଭାବ ବିସ୍ତାର କରିଚାଲିଛି । ତାହା ହେଉଛି- 'ମିଡ୍‌ବ୍ରେନ ଆକ୍ଟିଭେସନ' । ସାଧାରଣ ଭାଷାରେ ଏହାର ଅର୍ଥ ହେଉଛି ଷଷ୍ଠ ଇନ୍ଦ୍ରିୟକୁ ସକ୍ରିୟ କରିବା ।

ତେବେ ଏହି 'ମିଡ୍‌ବ୍ରେନ ଆକ୍ଟିଭେସନ' କ'ଣ ? ମିଡ୍‌ବ୍ରେନ ଆକ୍ଟିଭେସନ କୋଚିଙ୍ଗସେଣ୍ଟର ଚଳାଉଥିବା ମାଲିକମାନଙ୍କର ଦାବି ହେଉଛି- ଯେକୌଣସି ପାଞ୍ଚରୁ ୧୫ବର୍ଷ ବୟସ୍କ ପିଲାମାନଙ୍କର ମିଡ୍‌ବ୍ରେନ ଆକ୍ଟିଭ କରି ଦେଇହେବ । ଏଥିପାଇଁ ପିଲାଙ୍କୁ ଏକରୁ ଦୁଇସପ୍ତାହ ପର୍ଯ୍ୟନ୍ତ ଟ୍ରେନିଂ ଦିଆଯାଏ । ଏହି ଟ୍ରେନିଂ ସମୟରେ ପିଲାଙ୍କ ପିତା ମାତା କିମ୍ବା ଅଭିଭାବକମାନଙ୍କୁ ସାଙ୍ଗରେ ରହିବାକୁ ଅନୁମତି ଦିଆଯାଏ ନାହିଁ । ଏହି ଟ୍ରେନିଂ ପାଇବା ପରେ ପିଲାମାନେ ଆଖିରେ ପଟି ବାନ୍ଧି ଲେଖାପଢା କରିପାରିବେ, ଯେକୌଣସି ରଙ୍ଗ ଚିହ୍ନିପାରିବେ । ଏହି ଟ୍ରେନିଂ ସମୟରେ ବ୍ରେନ୍ ଏକ୍ସରସାଇଜ, ବ୍ରେନ୍ ଜିମ୍ ମେଡିଟେସନ ଏବଂ ବିଶେଷ ଭାବେ ପ୍ରସ୍ତୁତ ସ୍ପିରିଚୁଆଲ-ମ୍ୟୁଜିକ ଉପରେ ଡ୍ୟାନସ୍ ବି କରାଯାଇଥାଏ । ଭାରତୀୟ ଯୋଗ ଏବଂ ଜାପାନୀ ଟେକ୍‌ନିକର ମିଳିତ ପ୍ରକ୍ରିୟା ଦ୍ୱାରା ପିଲାଙ୍କ ଇନ୍ଦ୍ରିୟମାନଙ୍କୁ ସମ୍ବେଦନଶୀଳ ବନେଇ ଦିଆଯାଏ ବୋଲି ସେମାନେ ଦାବି କରୁଛନ୍ତି ।

ମିଡ୍‌ବ୍ରେନ ଆକ୍ଟିଭେସନର ଐତିହାସିକ ତଥ୍ୟ ହେଉଛି- ଏହା ପ୍ରଥମେ ଜାପାନରେ ଆରମ୍ଭ ହୋଇଥିଲା । ଜାପାନର 'ମାକୋଟୋ ସିଂଚେଡା' ନାମକ

ଜଣେ ବ୍ୟକ୍ତି ଏହି ବିଦ୍ୟାର ଜନକ ବୋଲି କୁହାଯାଉଛି । ଜାପାନର ଏହି ବିଦ୍ୟା କିନ୍ତୁ ବର୍ତ୍ତମାନ ଭାରତରେ ପ୍ରଚଳିତ ଅନ୍ଧବିଶ୍ୱାସ ଭଳି ନୁହେଁ ।

ଏହା ଏକ ଟ୍ରିକ୍ ବା କୌଶଳ ମାତ୍ର । ମଣିଷ ଆଖିରେ କଳାପଟି ବାନ୍ଧି ନାକ ଦୁଇପାଖରେ ରହିଯାଉଥିବା ଖୋଲା ବାଟରେ ଆଖିଦ୍ୱାରା ଦେଖିବା ଅଭ୍ୟାସ କରାଯାଏ । ଏହାକୁ 'ସିଂଚେଡା ମେଥଡ' କୁହାଯାଏ । ଜାପାନରେ ପିଲାର ଷଷ୍ଠ ଇନ୍ଦ୍ରିୟ ସକ୍ରିୟ ହୋଇଯାଉଛି ବୋଲି କୁହାଯାଏ ନାହିଁ । ଏହା ବିଜ୍ଞାନସମ୍ମତ ଏକାଗ୍ରତା ବୃଦ୍ଧି କରିବା ଭଳି ଏକ ଉପାୟ ବୋଲି କୁହାଯାଏ । ଜାପାନରେ ଏହି ବିଦ୍ୟାକୁ ନେଇ ବିବାଦ ସୃଷ୍ଟି ହୋଇଛି । ତେଣୁ ଏହାର ବିସ୍ତାର ହୋଇପାରିନାହିଁ । ଅନ୍ୟାନ୍ୟ କେତେକ ଦେଶରେ ବି ଏଭଳି କୋଚିଙ୍ଗ ଦେବାକୁ ଅନୁମତି ଦିଆଯାଇନାହିଁ ।

ଭାରତରେ କିନ୍ତୁ ସବୁ ଅମ୍ଭବ । କାରଣ, ୮୩% ଭାରତୀୟ ନିଜର ଧର୍ମୀୟ ମତବ୍ୟକ୍ତ କରିବା ଏବଂ ପ୍ରଚାର କରିବା ପାଇଁ ସ୍ୱାଧୀନ । ଏହି ତଥ୍ୟ ୟୁଏସସ୍ଥିତ 'ପିଉରିସର୍ଚ୍ଚ ସେଣ୍ଟର' ଦ୍ୱାରା ଏକ ସର୍ଭେ ରିପୋର୍ଟରେ ପ୍ରକାଶ ପାଇଛି । ସେହି ମତଗୁଡିକ ଯେତେ କୁସଂସ୍କାରଯୁକ୍ତ ହୋଇଥାଉ କିମ୍ବା ଅବୈଜ୍ଞାନିକ ପଦ୍ଧତି ହୋଇଥାଉ, କେହି ପ୍ରତିବାଦ କରିପାରିବେନାହିଁ । ବାକି ରହିଯାଉଥିବା ୧୭% ଭାରତୀୟମାନଙ୍କ ଭିତରେ ମୁକ୍ତଚିନ୍ତକ, ବୁଦ୍ଧିବାଦୀ ଓ ହେତୁବାଦୀମାନଙ୍କୁ ନିଜର ମତବ୍ୟକ୍ତ କରିବା ପାଇଁ ବାରଣ କରାଯାଉଛି ।

ଧାର୍ମିକଗୋଷ୍ଠୀ ତର୍କ କରନ୍ତି- 'ଆମେ ଯାହା ଠିକ୍ ଭାବି ବିଶ୍ୱାସ କରୁଛୁ, ତାହାକୁ ଭୁଲ୍ ପ୍ରମାଣିତ କରି ଅନ୍ଧବିଶ୍ୱାସ ବୋଲି କହିବା ଆମର ଧାର୍ମିକ ଭାବନାକୁ ଆଘାତ କରୁଛି । ଆମେ ଏହାକୁ ବରଦାସ୍ତ କରିପାରିବୁନି ।' ଏହି କାରଣରୁ ପିଲାଙ୍କର ଷଷ୍ଠିନ୍ଦ୍ରିୟ (?) ସକ୍ରିୟ କରିଦେବା ଆଳରେ ଧର୍ମଭୀରୁ, ଉଚ୍ଚମହତ୍ତ୍ୱାକାଂକ୍ଷୀ ଓ ଧନୀ ଲୋକମାନଙ୍କଠାରୁ ୨୫ରୁ ୫୦ହଜାର

ଟଙ୍କା ପର୍ଯ୍ୟନ୍ତ କୋଚିଙ୍ଗ ଫିସ୍ ଆଦାୟ କରାଯାଉଛି । ଏଭଳି କୋଚିଙ୍ଗ ସେଣ୍ଟର ବଡ ସହରରୁ ଛୋଟ ସହରମାନଙ୍କୁ ବି ବ୍ୟାପିଲାଣି । କୋଚିଙ୍ଗର ନାମ- 'ମିଡ୍‌ବ୍ରେନ ଆକ୍ଟିଭେସନ୍ ୱ୍‌ର୍‌କସପ', 'ଥାର୍ଡ ଆଇ ଆକ୍ଟିଭେସନ' କିମ୍ବା ଷଷ୍ଠ ଇନ୍ଦ୍ରିୟ ସକ୍ରିୟ କେନ୍ଦ୍ର' ଆଦି ଦେଖିବାକୁ ମିଳୁଛି । ଗଣମାଧ୍ୟମରେ ଏହାର ପ୍ରଚାର, ପ୍ରସାର ଦେଖି ମହାରାଷ୍ଟ୍ରରେ ଗଠିତ 'ଅଖିଳ ଭାରତୀୟ ଅନ୍ଧ ଶ୍ରଦ୍ଧା ନିର୍ମୂଳନ ସମିତି'ର ବୁଦ୍ଧିଜୀବୀ ସଦସ୍ୟମାନେ ଏହି ରହସ୍ୟର ପର୍ଦ୍ଦାଫାସ୍ କରିବାକୁ ଚାହିଁଲେ । କୋଚିଙ୍ଗ ସେଣ୍ଟର ଆୟୋଜକଙ୍କ ସହ ଆଲୋଚନା କରି ନାଗପୁରଠାରେ ଗୋଟିଏ ପ୍ରେସ୍ କନ୍‌ଫରେନ୍‌ସ ଆୟୋଜନ କରାଯାଇଥିଲା । ଟ୍ରେନିଂ ନେଇଥିବା କୌଣସି ପିଲା ଆଖିରେ ପଟି ବାନ୍ଧି ସମିତି ସଭ୍ୟମାନଙ୍କ ଦ୍ୱାରା ପ୍ରସ୍ତୁତ ପ୍ରଶ୍ନର ଠିକ୍ ଉତ୍ତର ଦେଇପାରିଲେ, ସମିତି ତରଫରୁ ୨୧ଲକ୍ଷ ଟଙ୍କାର ପୁରସ୍କାର ରାଶି ଦେବାକୁ ଘୋଷଣା କରାଯାଇଥିଲା । ମଜା କଥା ହେଲା- ସେଦିନ କୌଣସି ପିଲା ସଫଳ ହୋଇପାରିଲେ ନାହିଁ । ଆୟୋଜକ ଗଣମାଧ୍ୟମର ପ୍ରଶ୍ନକୁ ଏଡାଇବା ପାଇଁ ମୁହଁ ଲୁଚାଇ ପଳେଇଗଲେ ।

ମାଙ୍ଗାଲୋର ନିବାସୀ ଡ. ନରେନ୍ଦ୍ର ନାୟକ ଜଣେ ବୈଜ୍ଞାନିକ ଏବଂ ହେତୁବାଦୀ । ସେ ବର୍ତ୍ତମାନ 'ଫେଡେରେସନ୍ ଅଫ ଇଣ୍ଡିଆନ ରାସନାଲିଷ୍ଟ ଆସୋସିଏସନ୍ (ଏଫ୍‌ଆଇଆର୍‌ଏ)ର ସଭାପତି ଅଛନ୍ତି । ସେ ଦେଶ ଓ ବିଦେଶର ଅନେକ ଚମତ୍କାରୀ ବାବାମାନଙ୍କର ପର୍ଦ୍ଦାଫାସ୍ କରି ଲୋକମାନଙ୍କୁ ସଚେତନ କରୁଛନ୍ତି । ଡ. ନାୟକ ଏହି ବିଦ୍ୟାର ଅସଲ ରହସ୍ୟ କ'ଣ ବିଭିନ୍ନ ଗଣମାଧ୍ୟମରେ ପ୍ରଦର୍ଶନ କରି ପ୍ରମାଣିତ କରିସାରିଛନ୍ତି । ଯେ କେହି ୟୁଟ୍ୟୁବ୍‌ରେ "midbrain activation exposed' ଖୋଲି ଭିଡିଓ ଦେଖିପାରନ୍ତି ।

ମେରଠରେ ରଞ୍ଜନା ଅଗ୍ରୱାଲ ଜଣେ ଜଣାଶୁଣା ମିଡ୍‌ବ୍ରେନ ଆକ୍ଟିଭିଷ୍ଟ ।

ମାନବାଧିକାର ମନ୍ତ୍ରାଳୟ ତାଙ୍କୁ ଏଇଥିପାଇଁ ଏକ ପ୍ରମାଣପତ୍ର ବି ଦେଇଛନ୍ତି । ରଞ୍ଜନାଙ୍କୁ ଟ୍ରେନିଂ ଦେଇଥିବା ସ୍ମୃତି ଫାଉଣ୍ଡେସନର ମାଲିକ ରାଜୀବ ଆହୁଜାଙ୍କୁ ଡ. ନରେନ୍ଦ୍ର ନାୟକ ଯୋଗାଯୋଗ କରି ଚ୍ୟାଲେଞ୍ଜ କଲେ- 'ଯଦି ତାଙ୍କ ଦ୍ୱାରା ଟ୍ରେନିଂ ନେଇଥିବା ରଞ୍ଜନା ଅଗ୍ରୱାଲ ମୋ ଦ୍ୱାରା ପ୍ରସ୍ତୁତ ଆଖିର ପଟି ବାନ୍ଧି ଲେଖିପଢିପାରିବେ ବା ରଙ୍ଗ ଚିହ୍ନିପାରିବେ ତେବେ ମୁଁ ପାଞ୍ଚଲକ୍ଷ ଟଙ୍କା ପୁରସ୍କାର ଦେବି' । ରାଜୀବ ଆହୁଜା ପ୍ରଥମେ ଦୃଢତା ସହିତ ଚ୍ୟାଲେଞ୍ଜ ସ୍ୱୀକାର କଲେ । ସ୍ଥାନ ସମୟ ନିର୍ଦ୍ଧାରଣ ହେଲା, କିନ୍ତୁ ଠିକ୍ ସମୟରେ ସେ ଆସିଲେ ନାହିଁ । ଗଣମାଧ୍ୟମକୁ ଜଣେଇ ଦେଲେ- ମୁଁ ବର୍ତ୍ତମାନ ସେହି କୋଚିଙ୍ଗ୍ ସେଣ୍ଟର ବନ୍ଦ କରିଦେଲିଣି ।

ଡ. ନରେନ୍ଦ୍ର ନାୟକ ଆପତ୍ତି କରି କୁହନ୍ତି- ସେମାନେ ପିଲାମାନଙ୍କୁ ମିଛ କହିବା ପାଇଁ ଟ୍ରେନିଂ ଦେଉଛନ୍ତି ଏବଂ ପ୍ରେରିତ କରୁଛନ୍ତି । ଏହି ବାହାନାରେ କୋଟିକୋଟି ଟଙ୍କା ରୋଜଗାରର ଏକ ଗୋଲକଧନ୍ଦା ଚାଲିଛି । ଏହା ମାନବତା ଓ ସମାଜ ପାଇଁ କ୍ଷତିକାରକ ।

******

# ଭିତ୍ତିହୀନ ବିଶ୍ୱାସ ବିରୁଦ୍ଧରେ ସଂଘର୍ଷ

ବିଭିନ୍ନ ପ୍ରକାର ଭିତ୍ତିହୀନ ବିଶ୍ୱାସକୁ ପ୍ରଚାର କରି ଧର୍ମଭୀରୁ ଜନତାଙ୍କୁ ଠକିବା ପାଇଁ ଦୋକାନ ଖୋଲି ବସିଥିବା ତଥାକଥିତ ବାବା, ମାତା, ତାନ୍ତ୍ରିକ, ଗୁଣିଆ, ଜ୍ୟୋତିଷ, ସାଧୁ, ସନ୍ୟାସୀମାନଙ୍କ ବିରୁଦ୍ଧରେ ସମାଜର କିଛି ମୁକ୍ତମନା ବୁଦ୍ଧିବାଦୀମାନଙ୍କ ଦ୍ୱାରା ସଂଘର୍ଷ ଧୀରେଧୀରେ ବୃଦ୍ଧି ପାଇବାରେ ଲାଗିଛି। କିଛି ବୁଦ୍ଧିବାଦୀ, ପ୍ରଗତିଶୀଳ, ହେତୁବାଦୀ ଓ ସାହସୀ ବ୍ୟକ୍ତି ଜନମାନସରେ ଜମି ରହିଥିବା ଅସଂଖ୍ୟ ପ୍ରକାର ଭିତ୍ତିହୀନ ବିଶ୍ୱାସ ଦୂର କରିବା ପାଇଁ ଦୃଢତାର ସହ ପ୍ରୟାସ କରୁଛନ୍ତି। ଗତ ଦୁଇବର୍ଷ ମଧ୍ୟରେ ଦୁଇଟି ହିନ୍ଦୀ ଚଳଚ୍ଚିତ୍ର 'ଓ ମାଇଁ ଗଡ' ଏବଂ 'ପିକେ' ପ୍ରଦର୍ଶିତ ହୋଇ ଦେଶର ସାମାଜିକ କୁସଂସ୍କାର ଏବଂ ରଢିବାଦୀ ବିଚାରଧାରାକୁ ଦୋହଲାଇ ଦେଇଛି। ବିଶେଷକରି ବିଭିନ୍ନ ଧର୍ମସ୍ଥଳ ଓ ମଠମାନଙ୍କରେ ବସି ନିଜର ସ୍ୱାର୍ଥସିଦ୍ଧ କରୁଥିବା ପରଜୀବୀ ଗୋଷ୍ଠୀଙ୍କ ମୁହଁରୁ ପରଦା ଉଠେଇବା ପାଇଁ ଏହି ଦୁଇଟି ଚଳଚ୍ଚିତ୍ର ଜବରଦସ୍ତ ସନ୍ଦେଶ ଦେଇଛି। ମୌଳବାଦୀ ଗୋଷ୍ଠୀ ଯେତେ ତର୍କ ଦେଉଥିଲେ ସୁଦ୍ଧା ଆସ୍ତିକବାଦୀ ଦର୍ଶକ ଚଳଚ୍ଚିତ୍ରରେ ପ୍ରଦର୍ଶିତ ଦୃଶ୍ୟ ଓ ସମ୍ବାଦକୁ ଅସ୍ୱୀକାର କରିପାରିନାହାନ୍ତି। ସାମାଜିକ ସଂସ୍କାର ପାଇଁ ଏହା ଏକ ଶୁଭ ସୂଚନା। ବହିରେ ପଢିବା କିମ୍ବା କାହାରି ଭାଷଣ ଶୁଣିବା ଅପେକ୍ଷା ଟିଭି ଓ ସିନେମାର ଦୃଶ୍ୟ ମଣିଷକୁ ବେଶୀ ପ୍ରଭାବିତ କରିଥାଏ। ସେଥିପାଇଁ ଟିଭି ଚ୍ୟାନେଲଗୁଡିକରେ ଯଦି ଭିତ୍ତିହୀନ ବିଶ୍ୱାସ ବିରୁଦ୍ଧରେ କାର୍ଯ୍ୟକ୍ରମ ପ୍ରସାର ହୁଅନ୍ତା, ଖୁବ୍‌ଶୀଘ୍ର ସମାଜରେ ଏକ ସୁସ୍ଥ ବିଚାରଧାରା ବିକାଶ ଲାଭ କରନ୍ତା। କିନ୍ତୁ ଆଜିକାଲି କେବଳ ଭିତ୍ତିହୀନ ବିଶ୍ୱାସକୁ ବେଶୀ ପ୍ରସାର କରାଯାଉଛି। କାରଣ, ସେଥିରେ ଆର୍ଥିକ ଲାଭ ବେଶୀ ହେଉଛି।

ଗତ ଆଠବର୍ଷ ଧରି 'ଅନ୍ଧବିଶ୍ୱାସ ଭଗାଓ, ଦେଶ ବଚାଓ' ସ୍ଲୋଗାନ ଦେଇ ବିହାର ପ୍ରଦେଶରେ ବାସ କରୁଥିବା 'ବୁଦ୍ଧପ୍ରକାଶ ଭନ୍ତେ' ସମାଜରୁ କୁସଂସ୍କାର ଓ ଭିତ୍ତିହୀନ ବିଶ୍ୱାସ ଦୂର କରିବା ପାଇଁ ସଂଘର୍ଷ କରିଆସୁଛନ୍ତି।

ସେ କୁହନ୍ତି, ମୋ ଜୀବନର ଲକ୍ଷ୍ୟ ହେଉଛି- ପଣ୍ଡିତ, ମୁଲ୍ଲା ଏବଂ ଭଣ୍ଡ ଧର୍ମଗୁରୁମାନଙ୍କ ଦ୍ୱାରା ପ୍ରଚାରିତ ଭାଗ୍ୟ, ଭଗବାନ, ମୂର୍ତ୍ତିପୂଜା ପୁନର୍ଜନ୍ମବାଦ ଆଦିକୁ ବିରୋଧ କରିବା । ସେମାନେ ପ୍ରଚାର କରୁଛନ୍ତି 'କଣ କଣମେ ଭଗବାନ ହୈ' । ବାସ୍ତବମେ କଣ କଣ ମେ ବିଜ୍ଞାନ ହୈ ।' ବ୍ୟକ୍ତି, ସମାଜ, ଦେଶ ଓ ଦୁନିଆର ବିକାଶ କେବଳ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଦ୍ୱାରା ସମ୍ଭବ ହୋଇଛି । ଏଥିରେ ତଥାକଥିତ ଭଗବାନଙ୍କର କୌଣସି ହାତ ନାହିଁ । ବୁଦ୍ଧ ପ୍ରକାଶ ନିଜର ବଳିଷ୍ଠ ତର୍କ ଏବଂ ବିଜ୍ଞାନର କୌଶଳ ପ୍ରୟୋଗ କରି ବାବାମାନଙ୍କ ଦ୍ୱାରା ପ୍ରଦର୍ଶିତ ହେଉଥିବା ଚମତ୍କାରୀ ଖେଳର ପର୍ଦ୍ଦାଫାସ୍ କରିଦେଉଛନ୍ତି । ସେ ବିହାର ପ୍ରଦେଶର ସଂଖ୍ୟାଲଘୁ ଆୟୋଗର ଜଣେ ସକ୍ରିୟ ସଦସ୍ୟ । ସେ କୁହନ୍ତି, ଯୁଗଯୁଗ ଧରି ଅନ୍ଧବିଶ୍ୱାସର ଅମୁହାଁ ଗଳିରେ ବାସ କରୁଥିବା ମଣିଷମାନଙ୍କୁ ନୂତନ ଜ୍ଞାନରେ ଆଲୋକିତ କରି ପରିବର୍ତ୍ତନ କରିବା ପାଇଁ ସମୟ ତ ଲାଗିବ । ଧୀରେଧୀରେ ହେଉପଛେ ଲୋକମାନେ ଠକମାନଙ୍କ ଅସଲ ଉଦ୍ଦେଶ୍ୟ ବୁଝିବାକୁ ସକ୍ଷମ ହେଲେଣି ।

ଅନ୍ୟ ଜଣେ ହେତୁବାଦୀ ଡାକ୍ତର ଦିବାକର ତେଜସ୍ୱୀ ଗତ ଚଉଦବର୍ଷ ଧରି ସ୍ୱାସ୍ଥ୍ୟ ଓ ରୋଗ ସମ୍ପର୍କରେ ପ୍ରଚଳିତ ଅନେକ ଭ୍ରାନ୍ତ ଧାରଣା ଓ ଭିତ୍ତିହୀନ ବିଶ୍ୱାସକୁ ନିଜର ବଳିଷ୍ଠତର୍କ ଓ ଚିକିତ୍ସା ବିଜ୍ଞାନ ସାହାଯ୍ୟରେ ଭୁଲ୍ ପ୍ରମାଣିତ କରିଆସିଛନ୍ତି । ଏଡ୍ସ ଭଳି ମାରାତ୍ମକ ରୋଗ ସମ୍ପର୍କରେ ସମାଜରେ ଥିବା କିଛି ଭୁଲ୍‌ଧାରଣା ଦୂର କରିବା ପାଇଁ ସେ ଲୋକମାନଙ୍କୁ ବୁଝେଇଥା'ନ୍ତି । ଥରେ ସେ ପ୍ରମାଣିକ ରୂପେ ଜଣେ ଏଡ୍ସ ରୋଗୀର ଅଇଁଠା ବିସ୍କୁଟ୍ ତା'ରି ହାତରେ ନିଜେ ଖାଇ ସମସ୍ତଙ୍କୁ ଦେଖାଇ କହିଲେ- ଏହି ରୋଗୀ ସହ ମିଳାମିଶା କଲେ କିମ୍ବା ଭୋଜନ କଲେ ଏଡ୍ସ ରୋଗ ଜୀବାଣୁ ଆକ୍ରାନ୍ତ କରନ୍ତି ନାହିଁ । ରୋଗୀ ସହ ଅସୁରକ୍ଷିତ ଭାବେ ଯୌନସମ୍ପର୍କ ରଖିବା କିମ୍ବା ରୋଗୀର ରକ୍ତ ସୁସ୍ଥ ବ୍ୟକ୍ତିଙ୍କ ରକ୍ତରେ ମିଶିବା କାରଣରୁ ଏଡ୍ସ ରୋଗ ବ୍ୟାପିଥାଏ । ଆଗରୁ

ହଇଜା, ପ୍ଲେଗ୍, ବସନ୍ତ ଆଦି ରୋଗ ଦୈବୀପ୍ରକୋପ ଯୋଗୁ ହୁଏ ବୋଲି ବିଶ୍ୱାସ ଥିଲା। ବର୍ତ୍ତମାନ ମେଡିକାଲ୍ ସାଇନ୍ସ ଉଦ୍ଭାବନ କରିଥିବା ଆଧୁନିକ ଚିକିତ୍ସା ପଦ୍ଧତି ଓ ଔଷଧ ଦ୍ୱାରା ଉପରୋକ୍ତ ସମସ୍ତ ରୋଗର ସଫଳତା ପୂର୍ବକ ଚିକିତ୍ସା ହୋଇପାରୁଛି। ଲୋକମାନେ ହଇଜା ବ୍ୟାପିଲେ ଦେବୀ, ଦେବତାଙ୍କ ଭରସାରେ ବସି ରହୁନାହାନ୍ତି ବରଂ ଡାକ୍ତରଙ୍କ ପାଖକୁ ଦୌଡିଯାଉଛନ୍ତି।

ଆଜିର ବ୍ୟସ୍ତ ଜୀବନଶୈଳୀ ଯୋଗୁ ଅନେକ ଲୋକ ଡିପ୍ରେସନ ବା ମାନସିକ ଅବସାଦର ଶିକାର ହୋଇ, ଅସ୍ୱାଭାବିକ ବ୍ୟବହାର କରନ୍ତି ଓ ଅପ୍ରୀତିକର କଥାବାର୍ତ୍ତା କରନ୍ତି। ସେମାନଙ୍କ ଉପରେ କୌଣସି ପ୍ରେତବାଧା ଲାଗିଯାଇଛି କହି ପରିବାର ଲୋକେ କୌଣସି ଜଣାଶୁଣା ତାନ୍ତ୍ରିକ ବା ଗୁଣିଆ ପାଖକୁ ନେଇଯାଆନ୍ତି। ତାନ୍ତ୍ରିକଂ ଭୂତ ଉତାରିବା ବାହାନାରେ ପୂଜା କର୍ମକାଣ୍ଡ କରେ। ପୂଜା ଏବଂ ଦକ୍ଷିଣା ଖର୍ଚ୍ଚରେ କୌଣସି ସୀମା ନଥାଏ। କିନ୍ତୁ ରୋଗୀ ଭଲ ନହୋଇ ଆହୁରି ବେଶୀ ଅବସାଦ ଭିତରେ ବୁଡି ରହେ। ଯଦି ସେହି ବ୍ୟକ୍ତିଙ୍କୁ କୌଣସି ମନୋବୈଜ୍ଞାନିକ ପାଖକୁ ନିଆଯାଆନ୍ତା, ତେବେ ସେ ତା' ମନରେ ଅବସାଦର ଅସଲ କାରଣ ଖୋଜି ନିରାକରଣର ଉପାୟ ବତେଇ ଦିଅନ୍ତେ। ଏହାଦ୍ୱାରା ରୋଗୀଜଣକ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରିପାରନ୍ତେ।

ସାଧାରଣତଃ କୁହାଯାଏ ଯେ, ଗାଁ ଗହଳିର ଅଶିକ୍ଷିତ ଲୋକମାନେ ବେଶୀ ଅନ୍ଧବିଶ୍ୱାସୀ। କିନ୍ତୁ ଏହାର ବିପରୀତ ଆମେ ଦେଖୁଛୁ ସହରର ଶିକ୍ଷିତ ଓ ଉଚ୍ଚ ଶିକ୍ଷିତ ଲୋକମାନଙ୍କ ଭିତରେ ବି ଭିତ୍ତିହୀନ ବିଶ୍ୱାସ ପ୍ରବଳ ଭାବେ ଭରି ରହିଛି। ଇଣ୍ଡିଆନ ମେଡିକାଲ ଆସୋସିଏସନର ପ୍ରାକ୍ତନ ରାଷ୍ଟ୍ରିୟ ଅଧ୍ୟକ୍ଷ ଡ. ଅଜୟ୍ କୁମାର ବାବାମାନଙ୍କର ଠକବିଦ୍ୟା ବିରୁଦ୍ଧରେ ସ୍ୱର ଉଠେଇଥିଲେ। ବିଶେଷ କରି ବାବା ରାମଦେବଙ୍କ ଦ୍ୱାରା ପ୍ରଚାରିତ ଯୋଗ ଏବଂ ତାଙ୍କ ଦ୍ୱାରା ପ୍ରସ୍ତୁତ ଔଷଧ ଦ୍ୱାରା ସମସ୍ତ ପ୍ରକାର ରୋଗ ଠିକ୍ କରିଦେବା ଦାବିକୁ ସେ

ଅସ୍ୱୀକାର କରିଦେଇଥିଲେ । ସେ କୁହନ୍ତି ଏଡ୍ସ, ଡାଇବେଟିସ୍, ବ୍ଲଡପ୍ରେସର, ବାତ ଅନ୍ଧତ୍ୱ, ହାର୍ଟ, କିଡନୀ ଓ ଲିଭରର ରୋଗଗୁଡିକ କେବଳ ଯୋଗ ବା ପ୍ରାଣାୟାମ ଦ୍ୱାରା ଠିକ୍ କରିଦେବା ଦାବି ଆଦୌ ଗ୍ରହଣୀୟ ନୁହେଁ । ଯଦି ଚେରମୂଳ, ଝଡାଫୁଙ୍କା ଓ ଯୋଗ ଦ୍ୱାରା ସମସ୍ତ ରୋଗର ଚିକିତ୍ସା ସମ୍ଭବ ହୋଇପାରୁଥାନ୍ତା, ତେବେ ଆୟୁର୍ବେଦ, ଏଲୋପ୍ୟାଥି ଏବଂ ସମଗ୍ର ମେଡିକାଲ ସାଇନ୍ସର ଆବଶ୍ୟକତା ରହନ୍ତା ନାହିଁ । ଅସଲ କଥା ହେଉଛି, ଅନ୍ୟାନ୍ୟ ଶାରୀରିକ ବ୍ୟାୟାମ ଭଳି ଯୋଗ ଦ୍ୱାରା ଅନେକାଂଶରେ ରୋଗକୁ ନିୟନ୍ତ୍ରଣ କରି ରଖିହେବ । କିନ୍ତୁ ରୋଗର ଚିକିତ୍ସା ସମ୍ଭବ ନୁହେଁ । ଯେଉଁମାନେ ଯୋଗ ଦ୍ୱାରା ରୋଗମୁକ୍ତ କରିଦେବା ଦାବି କରୁଛନ୍ତି, ସେମାନେ ରୋଗୀକୁ ମୃତ୍ୟୁମୁହଁକୁ ଠେଲିଦେଉଛନ୍ତି ।

କୁଷ୍ଠ ରୋଗ ସମ୍ପର୍କରେ ବି ପ୍ରଚଳିତ ଧାରଣା ଅଛି- 'ଏହା ପୂର୍ବଜନ୍ମର ପାପକର୍ମର ଫଳ ।' ଏହା ସମ୍ପୂର୍ଣ୍ଣ ଭାବେ ଏକ ଭ୍ରାନ୍ତ ଧାରଣା ଓ ଭିତ୍ତିହୀନ ବିଶ୍ୱାସ । ଡ. ଦିବାକର ତେଜସ୍ୱୀ କୁହନ୍ତି, ଯେଉଁ ବ୍ୟକ୍ତିକୁ କୁଷ୍ଠରୋଗ ଆକ୍ରାନ୍ତ କରେ ତାକୁ ଅଧିକ ଯତ୍ନ ଓ ସହାନୁଭୂତି ଆବଶ୍ୟକ । କିନ୍ତୁ ତା'ର ପରିବାର ଲୋକମାନେ ହିଁ ତାକୁ ଘୃଣା ଓ ଉପେକ୍ଷା କରିଦିଅନ୍ତି । ଏହି ରୋଗ 'ମାଇକ୍ରୋବେକ୍ଟିରୀୟମ ଲେପ୍ରି' ନାମକ ଜୀବାଣୁ ଯୋଗୁ ହୋଇଥାଏ । ଏହି ରୋଗକୁ ପ୍ରାରମ୍ଭିକ ସ୍ତରରୁ ହିଁ ଚିହ୍ନଟ କରି କ୍ରମାଗତ ଭାବେ ଆଧୁନିକ ଚିକିତ୍ସା କଲେ ସମ୍ପୂର୍ଣ୍ଣ ଭାବେ ଭଲ ହୋଇଯାଏ । ଦେଶରେ ଅନେକ କୁଷ୍ଠାଶ୍ରମ ଗଠନ ହୋଇଛି । ପରିବାର ଦ୍ୱାରା ବିତାଡିତ ହୋଇ ଅନେକ ରୋଗୀ କୁଷ୍ଠାଶ୍ରମକୁ ଆସନ୍ତି, କିନ୍ତୁ ସେଠାରେ ବି ସେମାନଙ୍କର ଅବସ୍ଥା ଶୋଚନୀୟ ହୋଇପଡେ ।

ଉପରୋକ୍ତ ସମସ୍ତ ପ୍ରକାର ଭିତ୍ତିହୀନ ବିଶ୍ୱାସ ମୂଳରେ ରହିଛି ବୈଜ୍ଞାନିକ ଚିନ୍ତନର ଅଭାବ । ଯେଉଁମାନେ ଏଥିପାଇଁ ସଂଘର୍ଷ କରୁଛନ୍ତି, ସେମାନଙ୍କୁ ସ୍ୱଚ୍ଛ ମନରେ ସ୍ୱାଗତ କରି ସମର୍ଥନ କରିବା ହେଉଛି ଆଜିର ଆହ୍ୱାନ ।

******

# ନିରୀଶ୍ୱରବାଦୀ ପରମ୍ପରା

***ଭାରତରେ ନିରୀଶ୍ୱରବାଦୀ ବା ନାସ୍ତିକ ଶବ୍ଦର ତିନୋଟି ଅର୍ଥ ହେଉଛି- ଯିଏ ଈଶ୍ୱରଙ୍କ ଅସ୍ତିତ୍ୱକୁ ମାନେନାହିଁ, ଯିଏ ବେଦକୁ ପ୍ରମାଣିକ ଗ୍ରନ୍ଥ ମାନେନାହିଁ ଏବଂ ଯିଏ ପୁନର୍ଜନ୍ମକୁ ବି ମାନେନାହିଁ ।***

ମାନବ ଇତିହାସକୁ ନିଷ୍ପକ୍ଷ ଭାବେ ଯଦି ବିଶ୍ଳେଷଣ କରାଯାଏ, ତେବେ ଜଣାଯାଏ ଯେ, ପ୍ରଥମେ ପ୍ରତ୍ୟେକ ମାନବ ନିରୀଶ୍ୱରବାଦୀ ହିଁ ଥିଲା । ସେ ଥିଲା ପ୍ରକୃତିର ସନ୍ତାନ । କାରଣ, ସେହି ଯୁଗରେ ଈଶ୍ୱରର ଅବଧାରଣା ଜନ୍ମ ନେଇନଥିଲା । ମାନବର ବିକାଶ ଘଟିବା ସହିତ ଦୁନିଆରେ ଈଶ୍ୱର ଅବଧାରଣା କେବେ, କେଉଁ ସ୍ଥାନରେ, କେଉଁମାନଙ୍କ ଦ୍ୱାରା ଏବଂ କିପରି ସୃଷ୍ଟି ହେଲା, ତାହାର କୌଣସି ପ୍ରମାଣିକ ତଥ୍ୟ ଆଜି ଯାଏ କେହି ପାଇନାହାନ୍ତି । ସମସ୍ତେ ନିଜନିଜ କଳ୍ପନା ଅନୁସାରେ ସମୟର ହିସାବ ଲଗାଉଛନ୍ତି । ସମସ୍ତେ ନିଜ ଧର୍ମଗ୍ରନ୍ଥରେ ଉଲ୍ଲେଖ ଥିବା ତଥ୍ୟ ଓ ଦର୍ଶନକୁ ପୃଥିବୀର ପ୍ରାଚୀନ ଓ ଏକମାତ୍ର ସତ୍ୟ ଦର୍ଶନ ବୋଲି ଦାବି କରିଆସୁଛନ୍ତି । ପ୍ରତ୍ୟେକ ଧର୍ମ ସମ୍ପ୍ରଦାୟର କର୍ମକାଣ୍ଡ, ପୂଜାପଦ୍ଧତି ଭିନ୍ନଭିନ୍ନ ହେଲେ ବି ସମସ୍ତେ ଗୋଟିଏ କଥାରେ ଏକମତ ଏହି ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ଏକ, କେବଳ ନାମ ଅଲଗା ଯଥା : ଈଶ୍ୱର, ଆଲ୍ଲା, ଗଡ ଇତ୍ୟାଦି ।' ଏହି ଅଲଗା ନାମରୁ ହିଁ ମାନବ ସମାଜରେ ବିଭାଜନ ଘଟିଛି । ସୃଷ୍ଟିକର୍ତ୍ତାଙ୍କ ଅଲଗା ନାମରୁ ବିଭିନ୍ନ ଧାର୍ମିକ ସମ୍ପ୍ରଦାୟ ସୃଷ୍ଟି ହୋଇଛି । ପ୍ରତ୍ୟେକ ସମ୍ପ୍ରଦାୟର ଏକ ବା ଅନେକ ଧର୍ମପ୍ରବର୍ତ୍ତକ ରହିଛନ୍ତି । ବିଭିନ୍ନ ଧର୍ମ ସମ୍ପ୍ରଦାୟର ମାନ୍ୟତାପ୍ରାପ୍ତ ଧର୍ମଗ୍ରନ୍ଥ ଗୁଡିକରେ ଉଲ୍ଲେଖ କରାଯାଇଥିବା ତଥ୍ୟ ଓ ଦର୍ଶନ ଏକାଭଳି ନୁହେଁ, ବରଂ ପରସ୍ପର ବିରୋଧାଭାସ ସୃଷ୍ଟି କରୁଥିବା ଦେଖାଯାଉଛି । ଈଶ୍ୱର ସତ୍ତାକୁ ନେଇ ବିରୋଧାଭାସ ଏବଂ ଈଶ୍ୱର ସତ୍ତାର କୌଣସି ପ୍ରାମାଣିକ ତଥ୍ୟ ଉପଲବ୍ଧି ହେଉନଥିବା ଦେଖି ଦୁନିଆର ଅନେକ ବୁଦ୍ଧିବାଦୀ ଓ ହେତୁବାଦୀ

ବିଚାରକମାନଙ୍କ ମନରେ ଅନେକ ପ୍ରଶ୍ନ ଉଠିଲା- ଈଶ୍ୱର କିଏ ? ସେ କେଉଁଠି ରହନ୍ତି ? ତାଙ୍କ ସ୍ୱରୂପ କ'ଣ ? ମାନବ ସମାଜ ପ୍ରତି ତାଙ୍କ ଅବଦାନ କ'ଣ ? ଈଶ୍ୱର ବିନା ଏ ସଂସାର ତିଷ୍ଠିରହିବ କି ନାହିଁ ? ଇତ୍ୟାଦି ପ୍ରଶ୍ନର ଉତ୍ତର କେହି ବି ତର୍କସଙ୍ଗତ ଭାବେ ଦେଉ ନାହାନ୍ତି । ଈଶ୍ୱର ସତ୍ତାକୁ ମାନୁଥିବା ଆସ୍ତିକ ଗୋଷ୍ଠୀ କୁହନ୍ତି- 'ଈଶ୍ୱରଙ୍କୁ କେବଳ ବିଶ୍ୱାସ ବଳରେ ଅନୁଭବ କରିହେବ, ତର୍କ ବଳରେ ନୁହେଁ ।'

ଆସ୍ତିକବାଦର ଉପରୋକ୍ତ ବିଶ୍ୱାସକୁ ଚାଲେଞ୍ଜ କରି ହେତୁବାଦ ବା ନିରୀଶ୍ୱରବାଦ ଜନ୍ମ ହୋଇଛି । ପ୍ରକୃତିକୁ ନିରୀକ୍ଷଣ ଓ ଅଧ୍ୟୟନ କରି ପରୀକ୍ଷଣ ତଥା ଗବେଷଣା କରୁଥିବା ବୁଦ୍ଧିବାଦୀମାନେ ଆସ୍ତିକମାନଙ୍କର ଗୋଲମାଳିଆ ଉତ୍ତରରେ ସନ୍ତୁଷ୍ଟ ହେଲେନାହିଁ । ଈଶ୍ୱର ସତ୍ତାକୁ ଅସ୍ୱୀକାର ପୂର୍ବକ ଅଳ୍ପସଂଖ୍ୟକ ହେତୁବାଦୀ, ବହୁସଂଖ୍ୟକ ଆସ୍ତିକବାଦୀଙ୍କୁ ତର୍କ ଓ ପ୍ରମାଣ ସହିତ ସୃଷ୍ଟିର ରହସ୍ୟ ବୁଝେଇବାକୁ ଚେଷ୍ଟା କରିଆସିଛନ୍ତି । ଏହି ପ୍ରକ୍ରିୟା ଆଜି ପର୍ଯ୍ୟନ୍ତ ଚାଲିଛି । ଆସ୍ତିକମାନଙ୍କର ତୀବ୍ର ବିରୋଧ ସତ୍ତ୍ୱେ ହେତୁବାଦକୁ କେତେ ବୁଝିଲେଣି, ଆଉ କେତେ ବୁଝିବାକୁ ବାକି ଅଛି ।

ଦର୍ଶନ କ୍ଷେତ୍ରରେ ନିରୀଶ୍ୱରବାଦ ଏସିଆ ଓ ୟୁରୋପରେ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀଠାରୁ ଆରମ୍ଭ ହୋଇଥିବା ଅନୁମାନ କରାଯାଏ । ୟୁରୋପର ବୌଦ୍ଧିକ କ୍ଷେତ୍ରରେ ନିରୀଶ୍ୱରବାଦର ଧାରଣା ରେନେସାଁ ପରେ ବଳବତ୍ତର ହେଲା । ଫ୍ରାନ୍‌ସିସ୍ କ୍ରାନ୍ତି ଫ୍ରାନ୍‌ସକୁ ଧର୍ମର ପ୍ରଭାବରୁ ମୁକ୍ତ କରିବାକୁ ପ୍ରୟାସ କଲା । ପ୍ରଥମ ବିଶ୍ୱଯୁଦ୍ଧ ପରେ ସୋଭିଏତ କ୍ରାନ୍ତି ଯୋଗୁ ରୀତିମତ ଭାବେ ନିରୀଶ୍ୱରବାଦୀ ରାଜ୍ୟ ଗଠନର ପ୍ରଚାର ଆରମ୍ଭ ହେଲା । ପୂର୍ବଦିଗବର୍ତ୍ତୀ ଦେଶଗୁଡିକରେ ଈଶ୍ୱର ଅବଧାରଣାରୁ ମୁକ୍ତ ଏକ ଚିନ୍ତନଶୀଳ ଜୀବନ ପଦ୍ଧତି ଖ୍ରୀଷ୍ଟପୂର୍ବ ଷଷ୍ଠଶତାବ୍ଦୀ ବେଳେ ଆରମ୍ଭ ହେଲା । ଭାରତରେ ବୌଦ୍ଧଧର୍ମ, ଜୈନଧର୍ମ ଏବଂ ଲୋକାୟତ ବିଚାର ସହିତ ଚୀନରେ 'ତାୟୋବାଦ' ରୂପେ

ନିରୀଶ୍ୱରବାଦ ସୃଷ୍ଟି ହେଲା । ଜନସମାଜରେ ପ୍ରଚଳିତ ଦେବୀ ଓ ଦେବତାଙ୍କ ଅସ୍ତିତ୍ୱକୁ ଏହି ଧର୍ମଗୁଡିକ ସ୍ପଷ୍ଟ ରୂପେ ଅସ୍ୱୀକାର କରିନଥିଲେ ବି ସେମାନେ ନିରପେକ୍ଷ ଭାବେ ଏକ ନୈତିକ ଜୀବନ ପଦ୍ଧତିର ମାର୍ଗ ନିଶ୍ଚୟ ଦର୍ଶାଇଥିଲେ ।

ଜୈନଧର୍ମର ମତ ହେଉଛି- ଏ ସଂସାର ପଦାର୍ଥ ଏବଂ ଆତ୍ମା ଦ୍ୱାରା ଗଠିତ । ଏଗୁଡିକ ଅନାଦି ତତ୍ତ୍ୱ । ଏମାନଙ୍କର କୌଣସି ସୃଷ୍ଟିକର୍ତ୍ତା ନାହାନ୍ତି । ବୌଦ୍ଧଧର୍ମର ପରବର୍ତ୍ତୀ ଶାଖା ମହାଯନଙ୍କ ମତରେ ଏକ ଅନନ୍ତ, ସର୍ବବ୍ୟାପ୍ତ, ସର୍ବଜ୍ଞ, ସ୍ୱୟମ୍ଭୂ ଧର୍ମଧାତୁକୁ ମାନ୍ୟତା ଦିଆଗଲା । ଏହାକୁ ବୌଦ୍ଧିଚିତ୍ତ କୁହାଗଲା । ଏଥିରେ ବୁଦ୍ଧଙ୍କ ଧର୍ମକାୟ ବିଦ୍ୟମାନ ଥିବା କୁହାଗଲା ।

ଖ୍ରୀଷ୍ଟପୂର୍ବ ୫୨୩ ଶତାବ୍ଦୀ ପୂର୍ବେ ଜନ୍ମିତ ଅଜିତ୍‌କେଶ କମ୍ବଲଙ୍କ ବିଷୟରେ ମହାପଣ୍ଡିତ ରାହୁଳ ସାଂସ୍କୃତ୍ୟାୟନ ତାଙ୍କ ପ୍ରସିଦ୍ଧ ପୁସ୍ତକ 'ଦର୍ଶନ ଦିଗ୍‌ଦର୍ଶନ'ରେ ଲେଖିଛନ୍ତି, ଅଜିତ୍‌କେଶ ବୁଦ୍ଧଙ୍କ ସମୟର ଜଣେ ସମ୍ମାନିତ ତୀର୍ଥଙ୍କର (ସମ୍ପ୍ରଦାୟ ପ୍ରବର୍ତ୍ତକ) ଥିଲେ । ସେ ଦାନ, ଯଜ୍ଞ, ଭଜନ ଆଦିକୁ ନିରର୍ଥକ ବୋଲି ମାନୁଥିଲେ । ପୁନର୍ଜନ୍ମବାଦ ଏକ ମିଥ୍ୟା କଳ୍ପନା । ଅଜନ୍ମା ଦେବତା କେଉଁଠି ବି ନାହିଁ । ସତ୍ୟକୁ ଜାଣିଥିବା ଭଳି ବ୍ରାହ୍ମଣ ଏହି ଲୋକରେ କେହି ନାହିଁ ଯିଏ କି ଈଶ୍ୱର ସହ ସାକ୍ଷାତ କରୁଛି । ମଣିଷ ଯେଉଁ ଭୌତିକ ପଦାର୍ଥରେ ନିର୍ମିତ, ମୃତ୍ୟୁ ପରେ ତାହା ସବୁ କିଛି ସମାପ୍ତ ବା ନଷ୍ଟ ହୋଇଯାଏ । ସ୍ପଷ୍ଟତଃ, ଅଜିତ୍‌କେଶ କମ୍ବଲ, ଗୌତମ ବୁଦ୍ଧଙ୍କ ସମସାମୟିକ ନିରୀଶ୍ୱରବାଦୀ ତଥା ଭୌତିକବାଦୀ ଥିଲେ ।

ଭାରତରେ ନିରୀଶ୍ୱରବାଦୀ ବା ନାସ୍ତିକ ଶବ୍ଦର ତିନୋଟି ଅର୍ଥ ହେଉଛି- ଯିଏ ଈଶ୍ୱରଙ୍କ ଅସ୍ତିତ୍ୱକୁ ମାନେନାହିଁ, ଯିଏ ବେଦକୁ ପ୍ରମାଣିକ ଗ୍ରନ୍ଥମାନେ ନାହିଁ ଏବଂ ଯିଏ ପୁନର୍ଜନ୍ମକୁ ବି ମାନେନାହିଁ । ଏକାଧାରରେ ଏହି ତିନୋଟି ମତକୁ ଅସ୍ୱୀକାର କରୁଥିବା ବିଚାରଧାରା ଥିଲା ଚାର୍ବାକ ବା

ଲୋକାୟତ । ପ୍ରାଚୀନ ଭାରତୀୟ ଦର୍ଶନର ନଅଗୋଟି ଶାଖା ମଧ୍ୟରୁ ପ୍ରକୃତ ଅର୍ଥରେ ଲୋକାୟତ ଦର୍ଶନକୁ ହିଁ ଏକମାତ୍ର ଦର୍ଶନ କୁହାଯାଇପାରିବ । ଲୋକାୟତ ଦର୍ଶନରେ ସ୍ୱର୍ଗ ଏବଂ ମୋକ୍ଷ ଭଳି କାଳ୍ପନିକ ସୁଖକୁ ଅସ୍ୱୀକାର କରାଯାଇ ଏହି ଦୁନିଆର ମାନବ ସୁଖକୁ ଜୀବନର ସର୍ବୋଚ୍ଚ ଲକ୍ଷ୍ୟ ବୋଲି ମାନ୍ୟତା ଦିଆଯାଇଛି । ଲୋକାୟତ ଦର୍ଶନରେ ବୁଦ୍ଧିବାଦୀ, ମାନବତାବାଦୀ, ସୁଖବାଦୀ, ପ୍ରକୃତିବାଦୀ, ଭୌତିକବାଦୀ ଏବଂ ନିରୀଶ୍ୱରବାଦୀ ତତ୍ତ୍ୱ ଦେଖିବାକୁ ମିଳୁଛି । ଏହା ବ୍ୟତୀତ ଏଥିରେ ବ୍ରାହ୍ମଣବାଦର ତୀକ୍ଷଣ ବିରୋଧ କରାଯାଇଛି । ହିନ୍ଦୁ ଷଡଦର୍ଶନ ମଧ୍ୟରୁ ସାଂଖ୍ୟ ଏବଂ ମୀମାଂସା ସ୍ପଷ୍ଟ ରୂପେ ନିରୀଶ୍ୱରବାଦୀ ଦର୍ଶନ । ସେଥିରେ ଈଶ୍ୱରଙ୍କୁ ସୃଷ୍ଟିକର୍ତ୍ତା ବୋଲି ଅସ୍ୱୀକାର କରାଯାଇଛି । ସାଂଖ୍ୟ ଦର୍ଶନର ପ୍ରମୁଖ 'ସଂଖ୍ୟ ସାରିକା' ଚତୁର୍ଥ ଶତାବ୍ଦୀରେ ଲେଖାଯାଇଥିଲା । ଏହି ଦର୍ଶନ ପୁରୁଷ ଓ ପ୍ରକୃତିକୁ ଦ୍ୱୈତ ବୋଲି ମାନେ, କିନ୍ତୁ ଈଶ୍ୱରଙ୍କୁ ସ୍ୱୀକାର କରେ ନାହିଁ । ମୀମାଂସା ଦର୍ଶନର ମୂଳ ଆଧାର ଜୈମିନୀର 'ପୂର୍ବମୀମାଂସା ସୂତ୍ର' । ଏହା ଖ୍ରୀଷ୍ଟପୂର୍ବ ତୃତୀୟରୁ ପ୍ରଥମ ଶତାବ୍ଦୀ ସମୟର ବୋଲି କୁହାଯାଏ । ଏଥିରେ ଧାର୍ମିକ ଅନୁଷ୍ଠାନ ଓ ରହସ୍ୟବାଦକୁ ବିରୋଧ କରାଯାଏ । ଏଥିରେ କର୍ମ ବନ୍ଧନରେ ବନ୍ଧା ଏକ ଅଦୃଷ୍ଟର ଅବଧାରଣା ତ ଅଛି, କିନ୍ତୁ ଏହା କୌଣସି ଈଶ୍ୱରଙ୍କ ଆବଶ୍ୟକତାକୁ ଅନୁଭବ କରେ ନାହିଁ ।

୬୦୦ ଖ୍ରୀଷ୍ଟାବ୍ଦରେ ଚୋଳ ପ୍ରାନ୍ତର (ବର୍ତ୍ତମାନ ତାମିଲନାଡୁ) ତିରୁମଲା ଗାଁରେ ଜନ୍ମଗ୍ରହଣ କରିଥିବା ଧର୍ମକୀର୍ତ୍ତି ବୌଦ୍ଧଧର୍ମ ସମର୍ଥକ ଓ ପ୍ରଖର ନାସ୍ତିକ ଥିଲେ । ତାଙ୍କୁ ଡ. ଶ୍ଚେର୍ବାସ୍କୀ ଭାରତୀୟ 'କାଂଟ' କହି ଉପାଧି ଦେଇଥିଲେ । ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ ହେଉଛି 'ପ୍ରମାଣ ବାର୍ତ୍ତିକ' । ଗ୍ରନ୍ଥର ଏକ ଶ୍ଳୋକ ଦ୍ରଷ୍ଟବ୍ୟ- 'ବେଦ ପ୍ରାଣାୟ୍ମମ କଶ୍ୟଚିତ କତୃବାଦ, ସ୍ନାନେ ଧର୍ମେଚ୍ଛା ଜାତିବାଦବଲେପ : ସନ୍ତାପରମ୍ଭ ପାପହାନାୟ ଚେତି, ଧ୍ୱସ୍ତ ପ୍ରଜ୍ଞାନା

ପଞ୍ଚଲିଙ୍ଗାନି ଜାଡୟେ।' ଅର୍ଥାତ : ବେଦକୁ ପ୍ରାମାଣିକ କରିବା, କୌଣସି ଈଶ୍ୱରଙ୍କୁ ସୃଷ୍ଟିକର୍ତ୍ତା ମାନିବା, ସ୍ନାନ କଲେ ଧର୍ମ ହେଉଛି ବୋଲି ମାନିବା, ଉଚ୍ଚଜାତି ବୋଲି ଗର୍ବ କରିବା ଏବଂ ପାପକୁ ଦୂର କରିବା ପାଇଁ ଶରୀରକୁ ପୀଡାଦେବା (ଉପବାସ ଓ ତପସ୍ୟା କରିବା) ଏହି ପାଞ୍ଚଗୋଟି ଲକ୍ଷଣ ହେଉଛି ବିବେକହୀନ ମୂର୍ଖମାନଙ୍କର ଚିହ୍ନ। ଆଧୁନିକ ଯୁଗରେ ଜ୍ୟୋତିବା ଫୁଲେ, ରାଧାମୋହନ ଗୋକୁଳଜୀ, ପେରିୟର ରାମାସ୍ୱାମୀ, ସ୍ୱାମୀ ଅଚ୍ୟୁତାନନ୍ଦ, ମାନବେନ୍ଦ୍ରନାଥ ରାୟ, ଲାଲା ହରଦୟାଲ, ପ୍ରେମଚନ୍ଦ, ସ୍ୱାମୀ ସହଜାନନ୍ଦ, ଜବାହରଲାଲ ନେହରୁ, ଭୀମରାଓ ଆମ୍ବେଦକରଙ୍କ ଭଳି ଶହଶହ ପ୍ରଖ୍ୟାତ ସ୍ୱତନ୍ତ୍ରତା ସଂଗ୍ରାମୀ, ରାଜନେତା, ସମାଜ ସୁଧାରକ, କ୍ରାନ୍ତିକାରୀ, ଲେଖକ, ସାହିତ୍ୟକାର ଓ ସିନେମା ଜଗତର କଳାକାରମାନେ ନିରୀଶ୍ୱରବାଦକୁ ନିଜର ଜୀବନ ଦର୍ଶନ ରୂପେ ପାଳନ କରିଥିଲେ ଏବଂ କରିଛନ୍ତି।

ଖ୍ରୀଷ୍ଟପୂର୍ବ ଷଷ୍ଠରୁ ଚତୁର୍ଥ ଶତାବ୍ଦୀ ମଧ୍ୟରେ ୟୁନାନରେ ପଶ୍ଚିମୀ ଦର୍ଶନ ବିକାଶ ହୋଇଥିଲା। ପ୍ରାରମ୍ଭରେ ସେଠିକା ବିଚାରକମାନେ ସମ୍ପୂର୍ଣ୍ଣ ନିରୀଶ୍ୱରବାଦୀ ନ ଥିଲେ ବି ସେମାନେ ସଂସାରର ସୃଷ୍ଟି ଈଶ୍ୱରଙ୍କ ଦ୍ୱାରା ନୁହେଁ, ପ୍ରକୃତିର ସ୍ୱାଭାବିକ ପ୍ରକିୟା ଦ୍ୱାରା ଗଠିତ ହୋଇଥିବା କହିଥିଲେ। ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଜେନୋଫନେସ୍ କହିଥିଲେ- ଯଦି ଘୋଡା ଓ ଗାଈର ଗୋଡ ସହିତ ହାତ ରହିଥାନ୍ତା, ତେବେ ଲୋକମାନେ ଘୋଡା ଓ ଗାଈକୁ ଈଶ୍ୱର ରୂପେ ଚିତ୍ରଣ କରୁଥାନ୍ତେ। ୟୁରିପିଡିଜ (ଖ୍ରୀ.ପୂ. ୪୮୦ରୁ ୪୦୮) ଲିଖିତ ନାଟକର ନାୟକ ଘୋଷଣା କରିଥିଲେ - 'କିଏ କହୁଛି କି ଆକାଶରେ ଈଶ୍ୱର ରହିଛି। କୌଣସି ଦେବତା ନାହିଁ।

ସେହି ସମୟରେ ହିଁ ୟୁନାନୀ ଦର୍ଶନର ତତ୍ତ୍ୱବାଦୀ ୟୁନିକି ଶାଖା ବିକଶିତ ହେଲା। ଥେଲ୍, ଅନିକ୍ସ, ଭନ୍ଦର ଆଦି ଦାର୍ଶନିକ ଏହି ଦୁନିଆର ମୂଳତତ୍ତ୍ୱ କ'ଣ, ଏହା ଉପରେ ବିଚାରବିମର୍ଶ କଲେ। କେହି ବି ସୃଷ୍ଟିକର୍ତ୍ତା ଈଶ୍ୱରଙ୍କୁ ସତ ବୋଲି କହିଲେ ନାହିଁ।

ଏହା ପରେ ସୁକରାତ (ଖ୍ରୀ.ପୂ. ୪୬୯ରୁ ୩୯୯) କହିଲେ- ଠିକ୍ କାମ କରିବା ପାଇଁ ଠିକ୍ ଭାବେ ଚିନ୍ତା କରିବା ଆବଶ୍ୟକ।' ସେ ସଦାଚାର ଏବଂ ଜ୍ଞାନ ଆହରଣ ଉପରେ ଗୁରୁତ୍ୱ ଦେଉଥିଲେ। ସୃଷ୍ଟି କିପରି ଅସ୍ତିତ୍ୱକୁ ଆସିଲା ପ୍ରଶ୍ନଗୁଡ଼ିକର ଧାର୍ମିକ ମତକୁ ସେ ମୂର୍ଖମାନଙ୍କ ତର୍କ ବୋଲି କହୁଥିଲେ। ଜ୍ଞାନର ସଂଗ୍ରହ ଏବଂ ଏହାର ପ୍ରସାର ହିଁ ତାଙ୍କ ଜୀବନର ମୁଖ୍ୟ ଉଦ୍ଦେଶ୍ୟ ଥିଲା। ନିରୀଶ୍ୱରବାଦର ପ୍ରଚାର କରିବା ଦୋଷାରୋପ କରି ଏଥେନ୍ସ ଶାସକମାନେ ତାଙ୍କୁ ବିଷପାନ କରିବାକୁ ଦଣ୍ଡ ଦେଲେ। ସେ ଶାସକମାନଙ୍କ ଅଜ୍ଞାନତାର ଶିକାର ହୋଇ ଖୁସିରେ ବିଷପାନପୂର୍ବକ ମୃତ୍ୟୁ ବରଣ କଲେ କିନ୍ତୁ ନିଜର ମତ ପରିବର୍ତ୍ତନ କଲେ ନାହିଁ।

ପ୍ରବୋଧନ ବା ନବଜାଗରଣ ସମୟରେ 'ରୁଷୋ' ଖ୍ରୀଷ୍ଟିୟାନ୍ ବିଶ୍ୱାସକୁ ଖଣ୍ଡନ କରିଥିଲେ। ଗୋଟିଏ ଛୋଟିଆ ବଗିଚାର ଘଟଣା ଯୋଗୁ ସମଗ୍ର ମାନବ ଜାତି ପାପଗ୍ରସ୍ତ ହୋଇଗଲା ? (ବାଇବେଲ କାହାଣୀ) ଏହା ଏକ ଭିତ୍ତିହୀନ ବିଶ୍ୱାସ ବ୍ୟତୀତ ସତ୍ୟ ନୁହେଁ ବୋଲି ସେ କହିଥିଲେ। ୱାଲଟିୟରଙ୍କୁ ଫ୍ରାନ୍ସିସି କ୍ରାନ୍ତି ଏବଂ ସେଠାରେ ବିକଶିତ ନିରୀଶ୍ୱରବାଦ ପାଇଁ ଦାୟୀ ବୋଲି କୁହାଗଲା। ଯଦିଓ ସେ ମାନୁଥିଲେ ଯେ, ଅବ୍ୟବସ୍ଥିତ ସଂସାରକୁ ନିୟନ୍ତ୍ରଣ କରିବା ପାଇଁ ଈଶ୍ୱର ଭୟ ଏକ ପୋଲିସର ଭୂମିକା ଗ୍ରହଣ କରୁଛି। ତେଣୁ ଯଦି ଈଶ୍ୱର ନାହାନ୍ତି, ଆମେ ଈଶ୍ୱରଙ୍କୁ ଆବିଷ୍କାର କରିବା ଆବଶ୍ୟକ।

ନିର୍ବିବାଦ ଭାବରେ ଆଧୁନିକ ଯୁଗର ନିରୀଶ୍ୱରବାଦକୁ ବିକଶିତ କରିବା ଭଳି ପ୍ରଥମ ପୁସ୍ତକ ଫ୍ରାନ୍ସିସି କ୍ୟାଥୋଲିକ୍ ପାଦ୍ରୀ ଜେଁା ମେନିଲିୟର (୧୬୬୪-୧୭୨୯) ଲେଖିଥିଲେ। ପୁସ୍ତକର ନାମ 'ସଂସାରର ସମସ୍ତ ଧର୍ମର ଅହଂକାର ଏବଂ ମିତ୍ୟାର ନିରୂପଣ'। ତା'ପରେ ଆଉ ଏକ ପୁସ୍ତକ ବୋରୋନ ଦ ହୋଲବାଖ୍ (୧୭୨୩-୧୭୮୯) ୧୭୭୦ ମସିହାରେ

'ପ୍ରକୃତିର ବ୍ୟବସ୍ଥା' ପ୍ରକାଶିତ କରିଥିଲେ । ଏହି ପୁସ୍ତକର ଥିବା ନିରୀଶ୍ୱରବାଦୀ ବିଚାର ଯୋଗୁ ପ୍ରତିବନ୍ଧିତ କରାଗଲା ଓ ଜଳେଇ ଦିଆଗଲା । ଫ୍ରାନ୍ସିସି କ୍ରାନ୍ତି ସମୟରେ ନିରୀଶ୍ୱରବାଦୀମାନେ ଚର୍ଚ୍ଚଗୁଡିକୁ ବୁଦ୍ଧିବାଦୀଙ୍କ ସ୍ମାରକ ସ୍ଥଳରେ ପରିବର୍ତ୍ତନ କରିଦେଇଥିଲେ । କ୍ରସ ବଦଳରେ ଧର୍ମନିରପେକ୍ଷ ପ୍ରତୀକ ଚିହ୍ନ ବ୍ୟବହାର ହେଲା । ଚର୍ଚ୍ଚର ସମ୍ପତ୍ତି ଅଧିଗ୍ରହଣ କରିନିଆଗଲା । ବ୍ରିଟେନ ଓ ଇଂରାଜୀ ଭାଷାରେ ନିରୀଶ୍ୱରବାଦର ପ୍ରଥମ ପ୍ରକାଶିତ ଘୋଷଣା ପତ୍ର ଲିଭରପୁଲ୍‌ର ଚିକିତ୍ସା ବିଜ୍ଞାନୀ ମେଥ୍ୟୁଟର୍ମର ଦ୍ୱାରା ଲିଖିତ ପତ୍ର ଡ. ପ୍ରିଷ୍ଟଲଙ୍କ ଲିଖିତ ପତ୍ରର ଉତ୍ତର ବୋଲି କୁହାଯାଏ ।

୧୭୮୯ ମସିହାର ଫ୍ରାନ୍ସିସି କ୍ରାନ୍ତି ୟୁରୋପର ଅନେକ ଦେଶରେ ନିରୀଶ୍ୱରବାଦକୁ ସାମାନ୍ୟ ସ୍ୱୀକାର୍ଯ୍ୟ କରାଇ ବିବେକବାଦ, ମୁକ୍ତବିଚାର ଏବଂ ଉଦାରତାବାଦ ଭଳି ଆନ୍ଦୋଳନ ଆଗକୁ ବଢେଇଲା । ଇଂରାଜୀରେ ସୁପ୍ରସିଦ୍ଧ କବି ଶେଲୀ ୧୮୧୧ ମସିହାରେ ଏକ ବେନାମି ପାମ୍ପ୍ଲେଟ 'ନାସ୍ତିକତାର ଆବଶ୍ୟକତା' ଅକ୍ସଫୋର୍ଡର ଡିନ୍‌ଙ୍କ ପାଖକୁ ପଠେଇ ଦେଇଥିଲେ । ସେହି କାରଣରୁ ତାଙ୍କୁ ୟୁନିଭର୍ସିଟିରୁ ବାହାର କରି ଦିଆଯାଇଥିଲା । ଏହାର କିଛିବର୍ଷ ପରେ ଜର୍ମାନୀର ଲୁଡୱିଗ ଫେୟରବାରା 'ଖ୍ରୀଷ୍ଟିୟାନଙ୍କ ସାର' ନାମକ ପୁସ୍ତକ ଲେଖିଥିଲେ । ଏହି ପୁସ୍ତକ ଉଣେଇଶ ଶତାବ୍ଦୀରେ ଜର୍ମାନୀର ଅନ୍ୟ କିଛି ଯୁଗାନ୍ତକାରୀ ବିଚାରକ, କାର୍ଲମାକ୍ସ, ମେକ୍ସ ଷ୍ଟର୍ନର, ଆର୍ଥର ସାପନହାବର ଏବଂ ଫ୍ରେଡରିକ ନିଟେଶ ଆଦିଙ୍କୁ ପ୍ରଭାବିତ କରିଥିଲା । ମୁକ୍ତ ବିଚାରକ ଏବଂ ଶ୍ରମିକ ନେତା ଚାର୍ଲସ ବ୍ରେଡଲା ତିନିଥର ବ୍ରିଟିଶ ପାର୍ଲାମେଣ୍ଟକୁ ନିର୍ବାଚିତ ହେଲେ, କିନ୍ତୁ ପ୍ରତିଥର ସେ ଈଶ୍ୱରଙ୍କୁ ନାମରେ ଶପଥ ନେବାକୁ ମନା କରିଦେବାରୁ, ତାଙ୍କୁ ସଦସ୍ୟ ପଦ ମିଳିନଥିଲା । ଚତୁର୍ଥ ଥର ନିର୍ବାଚିତ ହେବା ପରେ ସଂସଦର ନୂତନ ବାଚସ୍ପତି ତାଙ୍କୁ ଈଶ୍ୱର ବଦଳରେ ସତ୍ୟନିଷ୍ଠାର ଶପଥ ଦିଆଇ ସଦସ୍ୟ ବନେଇ ଥିଲେ । କାର୍ଲମାକ୍ସ ୧୮୪୪ ମସିହାରେ ହେଗେଲର ଫିଲୋସଫି ଉପରେ ଲେଖୁଥିବା ପୁସ୍ତକରେ ଧର୍ମ ସମ୍ପର୍କରେ କିଛି

ଗୁରୁତ୍ୱପୂର୍ଣ୍ଣ ବାକ୍ୟ ଲେଖୁଥିଲେ । 'ଧାର୍ମିକ କଷ୍ଟଭୋଗ, ଏକାଦିକ୍ରମେ ବାସ୍ତବିକ କଷ୍ଟଭୋଗର ଅଭିବ୍ୟକ୍ତ ଏବଂ ତାହାର ବିରୋଧ ବି ଦର୍ଶାଉଛି । 'ଧର୍ମ ଶୋଷିତ ଓ ପୀଡିତ ଜନତାର ଆର୍ତ୍ତନାଦ, ହୃଦୟହୀନ ସଂସାରର ହୃଦୟ ଏବଂ ଆତ୍ମହୀନ ସମାଜର ଆତ୍ମା । ତେଣୁ ଏହା ଜନତାଙ୍କ ପାଇଁ ଅଫିମ ମାତ୍ର ।' ବିଂଶ ଏବଂ ଏକବିଂଶ ଶତାବ୍ଦୀରେ ନିରୀଶ୍ୱରବାଦ ପାଇଁ ଅନେକ ଦର୍ଶନକୁ ବ୍ୟାପକ ସ୍ୱୀକୃତି ମିଳିଛି । ଯଥା: ମାର୍କସବାଦ, ଲେନିନବାଦ, ମାଓବାଦ, ଅସ୍ତିତ୍ୱବାଦ, ବାସ୍ତବିକତାବାଦ, ମାଓବାଦ, ଅସ୍ତିତ୍ୱବାଦ, ବାସ୍ତବିକତାବାଦ, ଧର୍ମନିରପେକ୍ଷବାଦ, ମାନବବାଦ, ତାର୍କିକ ପ୍ରତ୍ୟକ୍ଷବାଦ, ନିଷେଧବାଦ, ଅରାଜକତାବାଦ ଏବଂ ହେତୁବାଦ ।

ପଶ୍ଚିମ ଦୁନିଆର ବିଖ୍ୟାତ ନିରୀଶ୍ୱରବାଦୀ, ମୁକ୍ତବିଚାରକ, ଦାର୍ଶନିକ, ଲେଖକ ଓ କ୍ରାନ୍ତିକାରୀଙ୍କ ତାଲିକାରେ ନିମ୍ନଲିଖିତ ବ୍ୟକ୍ତିଙ୍କ ନାମ ଅବଶ୍ୟ ଗଣନା କରାଯାଇପାରିବ । ଲକିଜନସ୍କି (୧୬୩୪-୮୯) 'ଈଶ୍ୱରର ଅନାସ୍ତିତ୍ୱ' ପୁସ୍ତକର ଲେଖକଙ୍କୁ ଅସହିଷ୍ଣୁ ଧାର୍ମିକମାନେ ହତ୍ୟା କରିଥିଲେ । ଜଁ୍ୟା ଫ୍ରେକୋଇସ ଦଲାବେରୀ (୧୬୪୫-୬୬) ଖ୍ରୀଷ୍ଟିୟାନ ଅସହିଷ୍ଣୁମାନଙ୍କ ଦ୍ୱାରା ମୃତ୍ୟୁବରଣ କରିଥିଲେ । ଡେନିସ ଦିଦରୋ (୧୭୧୩-୮୪ ଏନ୍ସାଇକ୍ଲୋପିଡିଆର ସମ୍ପାଦକ । ଜେରେମି ବେନ୍ଥମ (୧୭୪୮-୧୮୩୨) ଇଂରାଜୀ ଲେଖକ, ନ୍ୟାୟଶାସ୍ତ୍ରୀ । ଜନ୍ ଷ୍ଟୁଆର୍ଟ (୧୮୦୬-୭୩) ପ୍ରଖ୍ୟାତ ଦାର୍ଶନିକ । ବ୍ରୁନୋ ବାଉର (୧୮୦୯-୮୨) ଜର୍ମନୀ ଦାର୍ଶନିକ । ମିଖାଇଲ ବାକୁନିନ (୧୮୧୪-୭୬) । ଋଷର କ୍ରାନ୍ତିକାରୀ ନେତା ମାନବ ସମାଜରେ ଭିତ୍ତିହୀନ ବିଶ୍ୱାସକୁ ଦୂର କରି ବୈଜ୍ଞାନିକ ଚିନ୍ତନ ଜାଗ୍ରତ କରିବା ପାଇଁ ଆଜୀବନ ସଂଘର୍ଷ କରିଆସିଥିଲେ । ଆଜି ବି ନିରୀଶ୍ୱରବାଦୀ ପରମ୍ପରା ସାରା ଦୁନିଆରେ ବ୍ୟାପିଯାଇଛି । ଭବିଷ୍ୟତ ପିଢି ହୁଏତ ଏହାର ସୁଫଳ ପ୍ରାପ୍ତକରି ସୁଖୀ ଜୀବନ ଅତିବାହିତ କରିପାରିବେ ।

******

# ଅସହିଷ୍ଣୁତାର ପରିଭାଷା

***(ବ୍ୟକ୍ତିଗତ ଓ ପାରିବାରିକ ଅସହିଷ୍ଣୁତା ଘାତକ ହେଲେ ବି ନିୟନ୍ତ୍ରଣ କରିବା ସହଜ, କିନ୍ତୁ ଧାର୍ମିକ ଅସହିଷ୍ଣୁତାକୁ ମୂଳରୁ ନିୟନ୍ତ୍ରଣ ନକଲେ ସମାଜ ଓ ଦେଶକୁ ସମୃଦ୍ଧି ପଥରେ ଆଗେଇନେବା ଅସମ୍ଭବ ।)***

ବ୍ୟାବହାରିକ ଜୀବନରେ କେହି ଯଦି ଅନ୍ୟ କାହାର ମାନ, ସମ୍ମାନ ଓ ଧନକୁ କ୍ଷତି କରିବାର ପ୍ରୟାସ କରେ ତେବେ ସେ ବି ଏହାର ପ୍ରତିବାଦ କରେ । କାରଣ, ତାକୁ ଅସହ୍ୟ ହୁଏ । ଯଥାଃ- କାହାରି ମାଆ, ଭଉଣୀକୁ ଅଶ୍ରାବ୍ୟ ଭାଷାରେ ଗାଳି କରିବା, କାହାରି ଜାତି ପ୍ରତି ଆକ୍ଷେପମୂଳକ ବକ୍ତବ୍ୟ ଦେବା କିମ୍ବା କାହାରି ଧନସମ୍ପତ୍ତିକୁ ବଳପୂର୍ବକ ନଷ୍ଟ କରିବା ଦେଖିଲେ ଯେ କେହି ଅସହିଷ୍ଣୁ ହେବା ସ୍ୱାଭାବିକ । ଏହାର ପ୍ରତିକ୍ରିୟାସ୍ୱରୂପ ବିରୋଧ କରିବା ବି ସ୍ୱାଭାବିକ ।

ବର୍ତ୍ତମାନ କିନ୍ତୁ ଆମ ଦେଶରେ ଏକ ଭିତ୍ତିହୀନ ବିଶ୍ୱାସ ଓ ସଂସ୍କାରକୁ ନେଇ ଅସହିଷ୍ଣୁତା ଉପରେ ତର୍କବିତର୍କ ଚାଲିଛି, ଯାହାର ଅସ୍ତିତ୍ୱକୁ ନେଇ ଯୁଗଯୁଗ ଧରି ସନ୍ଦେହ ଘଟି ରହିଛି । ସେହି ତଥାକଥିତ ଦୈବୀସତ୍ତାକୁ ନେଇ ମଣିଷମାନଙ୍କ ଭିତରେ ଅସହିଷ୍ଣୁତାର ତାପମାନ ବେଳକୁ ବେଳ ଉପରକୁ ଉଠୁଛି । ବୁଦ୍ଧିଜୀବୀଙ୍କ ମତ ହେଉଛି- ଯହା ବିଦ୍ୟମାନ ନାହିଁ, ତାହା ଉପରେ ବିଶ୍ୱାସ କରିବା ଏକ ବ୍ୟକ୍ତିଗତ ବ୍ୟାପାର । ବ୍ୟକ୍ତିଗତ ସ୍ତରରେ ତଥାକଥିତ ଦୈବୀ ସତ୍ତାକୁ ବିଶ୍ୱାସ କରି ପୂଜା, ପ୍ରାର୍ଥନା ଓ ସାଧନା କରିବା ଦ୍ୱାରା ସମାଜର **କୌଣସି କ୍ଷତି ହୁଏନାହିଁ** । କିନ୍ତୁ ସେହି ବିଶ୍ୱାସକୁ ଯଦି ସେ ସାର୍ବଜନିକ ସ୍ତରରେ ଅନ୍ୟମାନଙ୍କୁ ବି ବିଶ୍ୱାସ କରିବା ପାଇଁ ବିଭିନ୍ନ ଉପାୟରେ ପ୍ରଭାବିତ କରିବାକୁ ଚାହିଁବ ତେବେ ସମାଜର ଅପୂରଣୀୟ କ୍ଷତି ହେଉଛି । ଏହା ଏକ ଅପ୍ରିୟ ସତ୍ୟ ।

ହେତୁବାଦୀ ବୁଦ୍ଧିଜୀବୀମାନଏ ସମାଜରେ ପ୍ରଚଳିତ ବିଭିନ୍ନ ଧରଣର

କୁସଂସ୍କାର, ଅନ୍ଧବିଶ୍ୱାସ ଓ ଅହେତୁକ ଭୟ ଦୂର କରିବା ପାଇଁ ତର୍କସଙ୍ଗତ ଓ ବିଜ୍ଞାନସମ୍ମତ ତଥ୍ୟ ଉପସ୍ଥାପନା କରୁଛନ୍ତି। କେବଳ ବିଶ୍ୱାସକୁ ଜାବୁଡିଧରି ଆସ୍ତିକବାଦୀମାନେ କୌଣସି ତର୍କ ମାନିବାକୁ ପ୍ରସ୍ତୁତ ନୁହନ୍ତି। ସେମାନେ କହୁଛନ୍ତି ଯୁଗ ଯୁଗରୁ ପ୍ରଚଳିତ ପ୍ରଥା, ପରମ୍ପରା ଓ ବିଶ୍ୱାସ କେବେ ବି ଭୁଲ ହୋଇପାରିବନି। ଦୁନିଆରେ ଏତେ ପରିବର୍ତ୍ତନ ଘଟିଲାଣି ତଥାପି ସେମାନେ ମାନସିକ ବିଶ୍ୱାସକୁ ପରିବର୍ତ୍ତନ କରିବାକୁ ଚାହାନ୍ତି ନାହିଁ। ତର୍କକୁ ମାନିବା ବଦଳରେ ସେମାନେ ବୁଦ୍ଧିଜୀବୀଙ୍କୁ ହିଁ ଅବିଶ୍ୱାସ କରୁଛନ୍ତି। ସେମାନଙ୍କ ମନରେ ଏତେ ପରିମାଣରେ ଘୃଣା, ଦ୍ୱେଷ ଓ କ୍ରୋଧ ଜାତ ହେଉଛି ଯେ, ବୁଦ୍ଧିଜୀବୀମାନଙ୍କ ପ୍ରତି ଅସହିଷ୍ଣୁତା ପ୍ରଦର୍ଶନ କରୁଛନ୍ତି। କାହାକୁ ଅଶ୍ରାବ୍ୟ ଭାଷାରେ ଗାଳି ଦେଉଛନ୍ତି, କାହାକୁ ଧରି ମୁହଁରେ କାଳି ବୋଳି ଦେଉଛନ୍ତି, କାହାର ଧନସମ୍ପତ୍ତି ଜାଳିପୋଡି ନଷ୍ଟ କରି ଦେଉଛନ୍ତି, ଏପରିକି ହତ୍ୟା ଭଳି ଜଘନ୍ୟ ଅପରାଧ ବି କରୁଛନ୍ତି। ଏହା ହିଁ ହେଉଛି ଧାର୍ମିକ ଅସହିଷ୍ଣୁତା। ଯଦିଓ ପ୍ରତ୍ୟେକ ଧର୍ମ କହୁଛି- ମାନବିକତା ଓ ସହିଷ୍ଣୁତା ହିଁ ଆମ ଧର୍ମର ମୂଳ ସିଦ୍ଧାନ୍ତ, କିନ୍ତୁ ପ୍ରତ୍ୟେକ ସ୍ଥାନରେ ଏହାର ବିପରୀତ ଦୃଶ୍ୟ ହିଁ ଦେଖିବାକୁ ମିଳୁଛି।

ଆମ ଦେଶ ଧର୍ମନିରପେକ୍ଷ ଦେଶ ବୋଲି ବିଶ୍ୱବିଦିତ, କିନ୍ତୁ ବାସ୍ତବରେ ତାହା ଭୁଲ ପ୍ରମାଣିତ ହେଉଛି। କେତେକ ଯୁକ୍ତି କରନ୍ତି- ଆମ ଦେଶ ଯଦି ସହିଷ୍ଣୁ ହୋଇ ନଥାନ୍ତା, ତେବେ ଏହି ଦେଶରେ ଏତେ ପରିମାଣରେ ଭିନ୍ନ ଧର୍ମ ଓ ଭିନ୍ନ ସମ୍ପ୍ରଦାୟର ଲୋକ ବଞ୍ଚିରହିପାରନ୍ତେ ନାହିଁ। ସେମାନେ ଏହାର ଅସଲ କାରଣ ହୁଏତ ଜାଣନ୍ତି ନାହିଁ କିମ୍ବା ଜାଣିଶୁଣି ବାହାନା କରୁଛନ୍ତି। ଏହାର ଅସଲ କାରଣ ସହିଷ୍ଣୁତା ନୁହେଁ। ସମସ୍ତେ ନିଜ ଅସ୍ତିତ୍ୱକୁ ବଞ୍ଚେଇ ରଖିବା ପଛରେ ଦୁଇଟି କାରଣ ରହିଛି। ପ୍ରଥମ- ଦେଶ ସ୍ୱାଧୀନ ହେବାପରେ ଆମ ସମ୍ବିଧାନରେ ଧର୍ମନିରପେକ୍ଷତାକୁ ଆଇନସମ୍ମତ କରାଗଲା। ଏହାଦ୍ୱାରା

ଯେଉଁଠି ଧର୍ମକୁ ନେଇ ବିଷମ ସ୍ଥିତି ବା ସଂଘର୍ଷ ଜାତ ହେଉଛି ସେଇଠି ପୋଲିସ ପ୍ରଶାସନ ହସ୍ତକ୍ଷେପ କରି ଦୃଢ ପଦକ୍ଷେପ ନେଉଛି। ଦ୍ୱିତୀୟ- ପ୍ରତ୍ୟେକ ଧର୍ମ ସମ୍ପ୍ରଦାୟ ନିଜକୁ ସୁରକ୍ଷିତ ରଖିବା ପାଇଁ ଯୁଦ୍ଧ ଓ ସଂଘର୍ଷ କରିବାକୁ ତିଆର ହୋଇ ରହୁଛନ୍ତି। ଏହି ଦୁଇ କାରଣରୁ କୌଣସି ସମ୍ପ୍ରଦାୟକୁ ମୂଳପୋଛ କରିଦେବା ସମ୍ଭବ ହୋଇପାରୁନାହିଁ। ସଂଘର୍ଷରେ ଦୁର୍ବଳ ସମ୍ପ୍ରଦାୟର ଧନ ଓ ଜନ କ୍ଷତିହେଲେ ବି ସବଳ ସମ୍ପ୍ରଦାୟ ସମ୍ପୂର୍ଣ୍ଣ ଭାବେ ଜିତି ପାରେନାହିଁ।

ମହାରାଷ୍ଟ୍ରର ଅନ୍ଧଶ୍ରଦ୍ଧା ନିର୍ମୂଳନ ସମିତିର ପ୍ରତିଷ୍ଠାତା ଦାମୋଦର ଦାଭୋଲକର ଏବଂ ବିଶିଷ୍ଟ ବାମପନ୍ଥୀ ଶ୍ରମିକ ନେତା ଗୋବିନ୍ଦ ପାନସାରେ ଥିଲେ ସମାଜ ସଂସ୍କାରକ। ସେମାନେ ଏକାଡେମୀ ପୁରସ୍କାରପ୍ରାପ୍ତ ଲେଖକ ନଥିଲେ। ଏହି ଦୁଇଜଣ ପ୍ରଗତିଶୀଳ ବୁଦ୍ଧିଜୀବୀଙ୍କ ହତ୍ୟା ସମ୍ପର୍କରେ ସାହିତ୍ୟ ଏକାଡେମୀ ଠାରୁ କୌଣସି ପ୍ରତିକ୍ରିୟା କେହି ଆଶା କରୁନଥିଲା। କିନ୍ତୁ ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ଲେଖକ ଶ୍ରୀ କଲବୁର୍ଗୀ ତାଙ୍କ ପୁରସ୍କାର ପୁସ୍ତକ ପାଇଁ ପ୍ରାଣବଳି ଦେବାପରେ କେନ୍ଦ୍ର ସାହିତ୍ୟ ଏକାଡେମୀର ରହସ୍ୟମୟ ନିରବତା ଭାରତବର୍ଷର ଏକାଡେମୀ ପୁରସ୍କାରପ୍ରାପ୍ତ ଲେଖକମାନଙ୍କ ମନରେ ତୀବ୍ର କ୍ଷୋଭ ଓ ଅସନ୍ତୋଷ ସୃଷ୍ଟି କଲା। ପରିଣମସ୍ୱରୂପ- ଜଣେ ପରେ ଜଣେ ଲେଖକ, କଳାକାର, ଶିଳ୍ପୀମାନେ ଏହାର ନିରବ ପ୍ରତିବାଦ କରିବା ଲାଗି ନିଜର ପୁରସ୍କାରମାନ ଫେରାଇବାକୁ ଆଗେଇ ଆସିଲେ। ପୁରସ୍କାରପ୍ରାପ୍ତ ବୁଦ୍ଧିଜୀବୀଙ୍କ ଅସଲ ଉଦ୍ଦେଶ୍ୟକୁ ଅଣଦେଖାକରି କିଛି ଅସହିଷ୍ଣୁ ନେତା ଓ ସମକାଳୀନ ଲେଖକମାନଙ୍କ ଦ୍ୱାରା ତାଚ୍ଛଲ୍ୟ କରାଯାଉଛି। ବୁଦ୍ଧିଜୀବୀମାନଙ୍କୁ କେବଳ ଧାର୍ମିକ ଉନ୍ମାଦ ଯୋଗୁ ହତ୍ୟା କରିଥିବା ଦୋଷୀମାନଙ୍କୁ ଯଥାଶୀଘ୍ର ଚିହ୍ନଟ କରି ଦଣ୍ଡ ଦେବା ପାଇଁ ସରକାର କାହିଁକି ଅବହେଳା କରୁଛନ୍ତି- ଏହା ହିଁ ହେଉଛି ପ୍ରତିବାଦର ମୁଖ୍ୟ ଉଦ୍ଦେଶ୍ୟ। କାରଣ, ଦୋଷୀମାନଙ୍କୁ ଗିରଫ ନକଲେ ଦେଶର ଅନ୍ୟାନ୍ୟ ବୁଦ୍ଧିଜୀବୀଙ୍କ ଜୀବନ ପ୍ରତି ବିପଦ ରହିବ। ଆଗକୁ

ଆହୁରି ଅନେକ ଅପରାଧୀ ପ୍ରେରଣା ପାଇ ନିର୍ଭୟରେ ହତ୍ୟା କରିଚାଲିବେ । ଏକ ମହାନ ଗଣତନ୍ତ୍ର ଓ ଧର୍ମନିରପେକ୍ଷ ଦେଶରେ ଯଦି କିଏ କ'ଣ ଖାଇବ, କିଏ କ'ଣ ପିନ୍ଧିବ ଓ କିଏ କ'ଣ ଲେଖିବ ବୋଲି ପ୍ରତିବନ୍ଧକ ଲାଗିବ, ତେବେ ମାନବ ଅଧିକାର ଓ ବ୍ୟକ୍ତି ସ୍ୱାଧୀନତା ରହିବ କେମିତି ?

ପୁରସ୍କାର ଫେରସ୍ତ କରୁଥିବା ବୁଦ୍ଧିଜୀବୀମାନଙ୍କୁ ଆକ୍ଷେପ କରି ନିହାତି ଅବିବେକପୂର୍ଣ୍ଣ ମନ୍ତବ୍ୟ ବ୍ୟକ୍ତ କରୁଛନ୍ତି । କିଏ କହୁଛି- ପୁରସ୍କାର ଫେରାଇବା ଅର୍ଥ ବିଜେପି ସରକାରଙ୍କୁ ଅସମ୍ମାନ କରିବା । କିଏ କହୁଛି ପୁରସ୍କାର ଫେରାଇ ସେମାନେ ଦେଶଦ୍ରୋହୀ କାମ କରୁଛନ୍ତି, କିଏ କହୁଛି ସେମାନେ କୌଣସି ରାଜନୈତିକ ଦଳ ଦ୍ୱାରା ପ୍ରେରିତ ହୋଇ ଶାସକ ଦଳକୁ ବଦନାମ କରୁଛନ୍ତି ।

ଉପରୋକ୍ତ ସମସ୍ତ ଆରୋପ ଅମୂଳକ ଏବଂ ଦାୟିତ୍ୱହୀନମୂଳକ ମନ୍ତବ୍ୟ । ଏହି ପ୍ରତିବାଦ ସରକାରଙ୍କୁ ଅସମ୍ମାନ କରିବା ନୁହେଁ କିମ୍ବା ଦେଶଦ୍ରୋହୀ କାମ ନୁହେଁ । ଏହି ପ୍ରତିବାଦ ହେଉଛି- ହିଂସାର ଅହିଂସକ ରୂପେ କ୍ଷୋଭ ପ୍ରକାଶ । ଦ୍ୱିତୀୟତଃ ଭାରତରେ ବର୍ତ୍ତମାନ ଏମିତି କୌଣସି ବଳିଷ୍ଠ ବିପକ୍ଷ ରାଜନୈତିକ ଦଳ ନାହିଁ ଯିଏ କାଶ୍ମୀରରୁ କନ୍ୟାକମାରୀ ଯାଏ କିମ୍ବା ପଶ୍ଚିମରୁ ପୂର୍ବରେ ଥିବା ରାଜ୍ୟମାନଙ୍କର ବୁଦ୍ଧିଜୀବୀମାନଙ୍କୁ ପୁରସ୍କାର ଫେରାଇ ଆଣିବା ପାଇଁ ବୁଝେଇପାରିବ । ବୁଦ୍ଧିଜୀବୀମାନେ କ'ଣ ଏତେ ବୋକା ?

ବ୍ୟକ୍ତିଗତ ଓ ପାରିବାରିକ ଅସହିଷ୍ଣୁତା ଘାତକ ହେଲେ ବି ନିୟନ୍ତ୍ରଣ କରିବା ସହଜ, କିନ୍ତୁ ଧାର୍ମିକ ଅସହିଷ୍ଣୁତାକୁ ମୂଳରୁ ନିୟନ୍ତ୍ରଣ ନକଲେ ସମାଜ ଓ ଦେଶକୁ ସମୃଦ୍ଧି ପଥରେ ଆଗେଇନେବା ଅସମ୍ଭବ । ଏଥିପାଇଁ ପ୍ରଥମେ ଜନସଚେତନ ହେବା ଆବଶ୍ୟକ, ଦ୍ୱିତୀୟରେ ପ୍ରଶାସନ ଦାୟିତ୍ୱରେ ଥିବା ବ୍ୟକ୍ତିଗଣ ପୂର୍ବାଗ୍ରହ ତ୍ୟାଗପୂର୍ବକ ନିଷ୍କକ୍ଷ ଭାବେ ନ୍ୟାୟ କରିବା ଆବଶ୍ୟକ ।

******

# କେବଳ ପ୍ରଶ୍ନ ନୁହେଁ: ଉତ୍ତର ହିଁ ସତ୍ୟକୁ ସିଦ୍ଧ କରେ

*ବିଭିନ୍ନ ସମୟରେ, ବିଭିନ୍ନ ଧର୍ମଗୁରୁଙ୍କର ବିଭିନ୍ନ ମତବାଦ ପରସ୍ପର ବିରୋଧୀ ହେଲେ ବି ଲୋକମାନେ ସେମାନଙ୍କୁ ଆଦର, ସମ୍ମାନ ଓ ଭକ୍ତି କରିଥା'ନ୍ତି । ଈଶ୍ୱର ଓ ଧର୍ମ ସମ୍ପର୍କରେ ସନ୍ଦେହ କରି ତର୍କ ବା ଯୁକ୍ତି କରିବା ମାନସିକତାକୁ ପଙ୍ଗୁ କରିଦିଆଯାଏ । ଈଶ୍ୱର ଜୀବମାନଙ୍କର ପରୀକ୍ଷା ନେବା ପାଇଁ ସବୁ ଲୀଳା ରଚନା କରୁଛନ୍ତି । ଆଜି ବି ଈଶ୍ୱର ଦତ୍ତ କର୍କଟ, କୁଷ୍ଠ ଓ ଟିଟାନସ ଭଳି କେତେକ ଅସାଧ୍ୟ ରୋଗରୁ ମଣିଷ କ'ଣ ସମ୍ପୂର୍ଣ୍ଣ ଭାବେ ମୁକ୍ତି ପାଇପାରୁଛି ?*

ଭାରତୀୟ ହେତୁବାଦୀ ସଂଗଠନର ଜଣେ ସକ୍ରିୟ ସଦସ୍ୟ ଯୋଗୁଁ ଆମକୁ ଦେଶର ବିଭିନ୍ନ ସ୍କୁଲ, କଲେଜ ଓ ପ୍ରଶିକ୍ଷଣ କେନ୍ଦ୍ରକୁ ଯାଇ ଚମତ୍କାରର ରହସ୍ୟ ଖୋଲିବା (Miracle expose) କାର୍ଯ୍ୟକ୍ରମ ଆୟୋଜନ କରିବାକୁ ପଡୁଛି । ଶେଷରେ ପ୍ରଶ୍ନ-ଉତ୍ତର କାର୍ଯ୍ୟକ୍ରମ ଥାଏ । ଏଠାରେ ଆମେ ସେହିଭଳି କିଛି ପ୍ରଶ୍ନ ଓ ଉତ୍ତରକୁ ଉଲ୍ଲେଖ କରୁଛୁ । ପ୍ରଥମ ପ୍ରଶ୍ନଟି ଏହିପରି- ଆଜିର ବିଜ୍ଞାନ ଗବେଷଣା କରି ମଣିଷ ଶରୀର ଗଠନ ଓ କ୍ରିୟାକଳାପ ସମ୍ପର୍କରେ ସବୁକିଛି ଜାଣିପାରିଥିବା ଦାବି କରୁଛି କିନ୍ତୁ ବିଜ୍ଞାନ କ'ଣ ସେହି ମହାନ ଶକ୍ତି 'ଆତ୍ମା' ସମ୍ପର୍କରେ କହିପାରିବ, ଯାହା ଶରୀର ତ୍ୟାଗ କଲା ମାତ୍ରେ ସବୁ ନିଷ୍କ୍ରିୟ ହୋଇଯାଉଛି ?

ଏହାର ଉତ୍ତର- କେବଳ ପ୍ରଶ୍ନ ଉଠିଲେ ଆତ୍ମାର ଅସ୍ତିତ୍ୱ ସିଦ୍ଧ ହୋଇଯାଏ ନାହିଁ । ପ୍ରଶ୍ନର ତର୍କସଙ୍ଗତ ଉତ୍ତର ଖୋଜି ବାହାର କଲେ ହିଁ କିଛି

ସିଦ୍ଧ ହୋଇଥାଏ । ପ୍ରାଣୀର ଶରୀର କିପରି କାମକରେ ? ଜୀବନ କ'ଣ ? ମୃତ୍ୟୁ କାହିଁକି ହୁଏ ? ଇତ୍ୟାଦି ପ୍ରଶ୍ନ ଜଟିଳ ନିଶ୍ଚୟ, କିନ୍ତୁ ଜଟିଳ ପ୍ରଶ୍ନଗୁଡ଼ିକର ଏକ କାଳ୍ପନିକ ଉତ୍ତରକୁ ସତ୍ୟ ବୋଲି ଧରି ବସିଲେ ତାହା ବୁଦ୍ଧିମତାର ପରିଚୟ ହେବନି ବରଂ ଉତ୍ତର ଖୋଜିବା ପରିଶ୍ରମରୁ ରକ୍ଷା ପାଇବା ଭଳି ଏକ ଆତ୍ମପ୍ରବଞ୍ଚନା ହିଁ କୁହାଯିବ । 'ଆତ୍ମା'ର ଅସ୍ତିତ୍ୱକୁ ଆଜି ପର୍ଯ୍ୟନ୍ତ କୌଣସି ଶରୀର ବିଜ୍ଞାନୀ ବା ଡାକ୍ତର ସ୍ୱୀକାର କରିନାହାନ୍ତି । ଏପରିକି ଧର୍ମଶାସ୍ତ୍ରଗୁଡ଼ିକରେ ବି 'ଆତ୍ମା' ସମ୍ପର୍କରେ ପରସ୍ପର ବିରୋଧୀ ମତ ପ୍ରକାଶପାଇଛି ।

ଠିକ୍ ସେହିପରି ପ୍ରକୃତିର ରହସ୍ୟମୟୀ ଓ ଅବୁଝା ଘଟଣା ସମୂହର କାରଣ ଖୋଜିବା ପରିଶ୍ରମରୁ ନିଜକୁ ବଞ୍ଚେଇ ରଖିବା ପାଇଁ ଈଶ୍ୱରଙ୍କୁ କାରଣ ବା ଉତ୍ତର ବୋଲି ମାନି ନିଆଯାଇପାରେ । କିନ୍ତୁ ତାହା ଠିକ୍ ନୁହେଁ । କାରଣ, ଏହା କେବଳ କଳ୍ପିତ ଉତ୍ତର । ଯଦି ଉତ୍ତର ଠିକ୍, ତା'ହେଲେ ତାହା ମନୁଷ୍ୟର ସୁଖ-ସମୃଦ୍ଧି ବଢାଇବା ପାଇଁ ପ୍ରୟୋଗ ହୋଇ ପାରୁନି କାହିଁକି ? ମନୁଷ୍ୟ ଉପରକୁ ଆସୁଥିବା ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ତଥା ଆକସ୍ମିକ ଦୁର୍ଘଟଣାରୁ ରକ୍ଷାପାଇବା ପାଇଁ ଈଶ୍ୱର ଶକ୍ତିକୁ ବ୍ୟବହାର କରାଯାଉ ନାହିଁ କାହିଁକି ?

ବିଜ୍ଞାନ ପ୍ରକୃତିର ରହସ୍ୟ ଭେଦ କରିବା ପାଇଁ ଯେଉଁ ଚେଷ୍ଟା ଚଳେଇଛି, ସେଥିରୁ ଆଜିଯାଏ ଯାହା ମିଳିଛି, ତାହାଦ୍ୱାରା ମନୁଷ୍ୟର ଅନେକ ହିତ ସାଧନ ହୋଇପାରିଛି । ମଣିଷ ଶରୀର ସମ୍ପର୍କରେ ବିଜ୍ଞାନ ଯାହା ଖୋଜିପାଇଛି, ତା'ଦ୍ୱାରା ଆଜି ମନୁଷ୍ୟ ଅନେକ ଗମ୍ଭୀର ରୋଗରୁ ମୁକ୍ତ ହୋଇପାରୁଛି । ପ୍ରାଣୀଜଗତ, ପ୍ରକୃତି, ପୃଥ୍ୱୀ ଓ ଅନ୍ତରୀକ୍ଷ କ୍ଷେତ୍ରରେ ମଧ୍ୟ ଅଧ୍ୟୟନ, ଅନ୍ୱେଷଣ ଓ ଗବେଷଣା ଚାଲିଛି । ସେଇଥିପାଇଁ ଆଜି ମଣିଷର

ସୁଖ-ସମୃଦ୍ଧିରେ ଯଥେଷ୍ଟ ଉନ୍ନତି ଘଟିଛି । ଆମେ ଯଦି ଯଥାସ୍ଥିତିବାଦରେ ବିଶ୍ୱାସ କରି ଅନ୍ତରୀକ୍ଷ, ପୃଥ୍ୱୀ ଓ ପ୍ରାଣୀଜଗତର ନିୟମକ ବା ସଷ୍ଟିକର୍ତ୍ତା କେବଳ ଈଶ୍ୱର ବୋଲି ଧରିନେବା, ତେବେ ଆମେ କେଉଁ କ୍ଷେତ୍ରରେ ଭଲା ପ୍ରଗତି କରିପାରିବା ? ହଜାରହଜାର ବର୍ଷ ତଳୁ ଆମେ ଈଶ୍ୱରଙ୍କୁ ବିଶ୍ୱାସ କରିଆସୁଛୁ, ତଥାପି ମଣିଷ ଉନ୍ନତ ଓ ସମର୍ଥ ହୋଇ ପାରିନଥିଲା କାହିଁକି ? ଯେତିକି ଗତ କିଛିବର୍ଷର ବିଜ୍ଞାନ ଯୋଗୁ ଘଟିଛି ।

ଦ୍ୱିତୀୟ ପ୍ରଶ୍ନଟି ହେଉଛି- ଏହି ସଂସାର ଏକ ପରୀକ୍ଷା କେନ୍ଦ୍ର ସଦୃଶ । ପ୍ରାଣୀ ଅଥବା ଜୀବ ଏଥିରେ ପରୀକ୍ଷାର୍ଥୀ ମାତ୍ର । ଈଶ୍ୱର ଏମାନଙ୍କର ପରୀକ୍ଷକ ।

ଏହି ପ୍ରଶ୍ନର ଉତ୍ତରରେ କୁହାଯାଇପାରେ- ଯଦି ଈଶ୍ୱର ଜଣେ ପରୀକ୍ଷକ, ଯିଏ ପ୍ରାଣୀମାନଙ୍କୁ ବିଭିନ୍ନ କଷ୍ଟଦାୟକ ରୋଗ ଦେଇ ଅପେକ୍ଷା କରନ୍ତି ଯେ ସେମାନେ ସେଥିରୁ ମୁକ୍ତ ହୋଇପାରୁଛନ୍ତି କି ନାହିଁ, ତା'ହେଲେ ଈଶ୍ୱରଙ୍କଠାରୁ କ୍ରୁର ଓ ନିଷ୍ଠୁର ଆଉ କିଏ ହୋଇପାରେ ? ଧରନ୍ତୁ, କୌଣସି ଖେଳ ପାଇଁ ପ୍ରାର୍ଥୀ ଚୟନ କରି ଖେଳାଳିର ପରୀକ୍ଷା ନେବା ପାଇଁ ତା'ର ହାତ କିମ୍ବା ଗୋଡ ଭାଙ୍ଗିଦେଇ କୁହାଯିବ ତୁମେ ଠିକ୍ ହୋଇ ଖେଳରେ ଜିତି ଦେଖାଅ । ଆପଣ ଏହି ପରୀକ୍ଷା ନୀତିକୁ କ'ଣ କହିବେ ? ପ୍ରାର୍ଥୀ ପ୍ରତି ଏହା ଅନ୍ୟାୟ, କ୍ରୁର ଓ ଅମାନବୀୟ ବ୍ୟବହାର ବୋଲି କୁହାଯିବ ନାହିଁକି ? ଈଶ୍ୱର ବି ଯଦି ରୋଗ ଦେଇ ନିଜ ଚେଷ୍ଟାରେ ଆରୋଗ୍ୟ ହୋଇ ଦେଖାଅ ବୋଲି ସର୍ତ୍ତ ରଖନ୍ତି, ତେବେ ଆପଣ କେଉଁ ନ୍ୟାୟରେ ତାଙ୍କୁ ଦୟାଳୁ ଓ ମଙ୍ଗଳକର୍ତ୍ତା ବୋଲି କହିବେ ? ଈଶ୍ୱରଙ୍କ ଏହି ସର୍ତ୍ତ ଦ୍ୱାରା ଜଣାପଡୁଛି, ତାଙ୍କୁ କାଳେ କେହି ଅସ୍ୱୀକାର କରିବ ଏବଂ ଜୀବନ ସାରା ପୂଜା ଓ ପ୍ରାର୍ଥନା ନକରିବ ଭାବି ପ୍ରାଣୀମାନଙ୍କୁ

ରୋଗ, ଶୋକ ଓ ଯନ୍ତ୍ରଣା ଦିଅନ୍ତି । ମୃତ୍ୟୁ ଏକ ଚରମ ସତ୍ୟ । ସମସ୍ତ ପ୍ରାଣୀ ଦିନେ ନା ଦିନେ ମୃତ୍ୟୁବରଣ କରିବେ । ଏପରିକି ଅବତାର ଗ୍ରହଣ କରିଥିବା ଶ୍ରୀରାମ ଓ ଶ୍ରୀକୃଷ୍ଣ ବି ମୃତ୍ୟୁବରଣ କରିଥିଲେ । ପ୍ରଶ୍ନ ଉଠୁଛି- ରାମ ଓ କୃଷ୍ଣ ତ ସ୍ୱୟଂ ଭଗବାନ ଥିଲେ । ସେମାନଙ୍କ ପରୀକ୍ଷା ପୁଣି କିଏ ନେଇଥିଲା ?

ତୃତୀୟ ପ୍ରଶ୍ନକୁ ଆସିବା । ଈଶ୍ୱରଙ୍କର କୌଣସି ରୂପ ନାହିଁ । ସେ ଏକ ଦିବ୍ୟ ଏବଂ ଅଦୃଶ୍ୟ ଶକ୍ତି । ମଣିଷ ହିଁ ଈଶ୍ୱରଙ୍କ ବିଭିନ୍ନ ରୂପ ସୃଷ୍ଟି କରିଛି । ଈଶ୍ୱରଙ୍କୁ ସମସ୍ତେ ଅନୁଭବ କରିପାରୁ ନାହାନ୍ତି । ତେଣୁ ଯେଉଁ ସାଧକ ମହାପୁରୁଷମାନେ ଈଶ୍ୱରଙ୍କୁ ଯେଉଁ ରୂପରେ ଅନୁଭବ କରିଛନ୍ତି, ସେମାନେ ଅନ୍ୟମାନଙ୍କୁ ସେହି ରୂପରେ ବୁଝେଇଛନ୍ତି, ଯାହା ଫଳରେ ଲୋକମାନେ ବିଶ୍ୱାସ କରିଆସିଛନ୍ତି । ସେହି ମହାପୁରୁଷମାନଙ୍କ ଅନୁଭବ ଓ ବାଣୀକୁ ଆମେ ଭୁଲ୍ ବୋଲି କହିପାରିବାକି ?

ଉତ୍ତର- ଈଶ୍ୱରଙ୍କୁ ଦିବ୍ୟ, ଅଦୃଶ୍ୟ ଓ ସାଧାରଣ ମଣିଷର ବୁଝିବା ଶକ୍ତି ବାହାରେ ବୋଲି ଏକ ଭ୍ରମାତ୍ମକ ପ୍ରଚାର କରି ହିଁ ଧର୍ମ ଯାଜକମାନେ ଲୋକମାନଙ୍କୁ ପ୍ରଭାବିତ କରିପାରିଛନ୍ତି । ଗୋଟିଏ ଦିଗରେ ଈଶ୍ୱରଙ୍କୁ ଅଦୃଶ୍ୟ, ଅଗମ୍ୟ, ଅବୋଧ୍ୟ ଶକ୍ତି ରୂପେ ପ୍ରଚାର କରାଯାଉଛି ଏବଂ ଅନ୍ୟ ଏକ ଦିଗରେ ଈଶ୍ୱରଙ୍କ ବିଭିନ୍ନ ପ୍ରକାର ସଦୃଶ ରୂପ ଥିବା ବର୍ଣ୍ଣନା କରାଯାଉଛି । ଏଭଳି ପରସ୍ପର ବିରୋଧୀ ମତବାଦକୁ ସାଧାରଣ ମଣିଷ କେଉଁ ମତକୁ ବିଶ୍ୱାସ କରିବ ? ଧରନ୍ତୁ, ଜଣେ ମହାପୁରୁଷ ଈଶ୍ୱରଙ୍କ ସାଧନା କରି ଯେଉଁ ରୂପରେ ଅନୁଭବ କଲେ, ସେ ସେହିଭଳି ବର୍ଣ୍ଣନା କରି ଲୋକମାନଙ୍କୁ ବୁଝେଇ ଦେଲେ । ଏଇଠି

ପ୍ରଶ୍ନଉଠୁଛି- ମହାପୁରୁଷଙ୍କ ବର୍ଣ୍ଣନା ଅନୁସାରେ କୌଣସି ସାଧାରଣ ମଣିଷ ବକ୍ତବ୍ୟର ପ୍ରାମାଣିକତା ପରୀକ୍ଷା କରି ଦେଖିବା ପାଇଁ କୌଣସି ଉପାୟ୍ ଅଛି କି ? ନାହିଁ । କେବଳ ଅନ୍ଧ ଭାବେ ବିଶ୍ୱାସ କର, ସେ ଯାହା କହୁଛନ୍ତି ଠିକ୍ । ଏହାର ବିପରୀତ ବୈଜ୍ଞାନିକମାନେ ଯଦି ପ୍ରୟୋଗଶାଳାରେ କୌଣସି ନୂତନ ତଥ୍ୟ ଖୋଜି ପାଉଛନ୍ତି, ତାହା ପ୍ରକାଶ ପାଇବା ପରେ ଅନ୍ୟ ଯେ କୌଣସି ବ୍ୟକ୍ତି ଉକ୍ତ ପଦ୍ଧତି ଅନୁସାରେ ପ୍ରୟୋଗ କରି ଠିକ୍ ସେହି ତଥ୍ୟ ହିଁ ପ୍ରାପ୍ତ କରିପାରିବ । ବୈଜ୍ଞାନିକ ସତ କହୁଛନ୍ତି କି ମିଛ, ପ୍ରେୟୋଗ ଦ୍ୱାରା ପ୍ରମାଣିତ ହୋଇଯାଏ । କିନ୍ତୁ ମହାପୁରୁଷ ବୋଲାଉ ଥିବା ସାଧୁ, ସନ୍ଥମାନେ ସତ କହୁଛନ୍ତି କି ମିଛ ଜାଣିବାର ଉପାୟ୍ ନାହିଁ । ଧର୍ମବିଶ୍ୱାସୀ ଜନତା ଏହି ବିଷୟ୍ରେ ଚିନ୍ତା କରିବା ଅନାବଶ୍ୟକ ଭାବି ଏଡାଇ ଦିଅନ୍ତି । ବିଭିନ୍ନ ସମୟ୍ର, ବିଭିନ୍ନ ଧର୍ମଗୁରୁଙ୍କର ବିଭିନ୍ନ ମତବାଦ ପରସ୍ପର ବିରୋଧୀ ହେଲେ ବି ଲୋକମାନେ ସେମାନଙ୍କୁ ଆଦର, ସମ୍ମାନ ଓ ଭକ୍ତି କରିଥାନ୍ତି । ସେମାନଙ୍କୁ ନିଜ କ୍ଷମତାନୁସାରେ ଦାନ-ଦକ୍ଷିଣା ଦେଇ, ସମ୍ମାନିତ ସ୍ଥାନରେ ପହଞ୍ଚାଇ ଦିଅନ୍ତି । ଈଶ୍ୱର ଓ ଧର୍ମ ସମ୍ପର୍କରେ ସନ୍ଦେହ କରି ତର୍କ ବା ଯୁକ୍ତି କରିବା ମାନସିକତାକୁ ପଙ୍ଗୁ କରିଦିଆଯାଏ । ସେଥିପାଇଁ ଯେତେପ୍ରକାର ବିରୋଧାଭାସ ଦେଖିଲେ ବା ଶୁଣିଲେ ବି ପ୍ରତିବାଦ କରିବାକୁ କେହି ସାହସ କରନ୍ତି ନାହିଁ । ପ୍ରତିବାଦ କଲେ ପାପ ହେବାର ଭୟ୍ ଯୋଗୁ ଚୁପ୍ ରହନ୍ତି ।

********

# ସଫଳତା ଓ ଅସଫଳତାର ହେତୁ

ଯେତେବେଳେ କୌଣସି ମଣିଷକୁ କୌଣସି କ୍ଷେତ୍ରରେ ସଫଳତା ମିଳିଥାଏ, ସେ କହେ 'ସତରେ ମୁଁ କେତେ ଭାଗ୍ୟଶାଳୀ'। ଏହାର ବିପରୀତ ସେ ଯେତେବେଳେ ଅସଫଳ ହୁଏ, ସେ କହେ 'ମୋର ଭାଗ୍ୟ ଖରାପ'। ସାଧାରଣ ଭାଷାରେ ସଫଳତା ଅର୍ଥ ଭାଗ୍ୟବାନ ଏବଂ ଅସଫଳତା ଅର୍ଥ 'ଭାଗ୍ୟହୀନ' ବୋଲି ବୁଝାଯାଏ। ଏଇଠି ପ୍ରଶ୍ନ ଉଠୁଛି- ମଣିଷର ସଫଳତା କିମ୍ବା ଅସଫଳତା ପାଇଁ ସତରେ କ'ଣ ଭାଗ୍ୟ ନାମକ କୌଣସି ଅଦୃଶ୍ୟ ଶକ୍ତିର ଭୂମିକା ରହୁଛି ?

ବିଭିନ୍ନ ଧର୍ମରେ, ବିଭିନ୍ନ ଭାଷାରେ ଭାଗ୍ୟର ନାମ ଅଲଗା ଅଲଗା ହୋଇଥିଲେ ବି ଅର୍ଥ ଏକା ପ୍ରକାର ହୋଇଥାଏ। ଯଥା- ଅଦୃଷ୍ଟ, କପାଳ, ଦୈବାଦିଷ୍ଟ, କିସ୍‌ମତ ଓ ଲକ୍। ଦୁନିଆରେ ଅନେକ ଜୀବଜନ୍ତୁ ଥିଲେ ବି କେବଳ ମଣିଷହିଁ ଭାଗ୍ୟ ଦ୍ୱାରା ପ୍ରଭାବିତ ହେଉଥିବା ଦେଖାଯାଏ। ସତେ ଯେମିତି ତଥାକଥିତ ଭାଗ୍ୟବିଧାତା ମଣିଷର ହିଁ ଭାଗ୍ୟ ନିର୍ଦ୍ଧାରଣ କରିବା ପାଇଁ କେଉଁଠି ପାଞ୍ଜି, ପୋଥି ଧରି ବସିଛି। ଏହା ସମ୍ପୂର୍ଣ୍ଣ ଭାବେ ଏକ ଅବୈଜ୍ଞାନିକ ତଥ୍ୟ। କେବଳ ବିଶ୍ୱାସ ଉପରେ ପର୍ଯ୍ୟବସିତ।

ବୈଜ୍ଞାନିକ ତଥ୍ୟ ହେଉଛି- ମଣିଷର ସଫଳତା କିମ୍ବା ଅସଫଳତା ନିର୍ଭର କରୁଛି- ନିଜର ପ୍ରତିଭା, କାର୍ଯ୍ୟଦକ୍ଷତା, ଅନ୍ୟମାନଙ୍କର ସାହାଯ୍ୟ ଓ ସହଯୋଗ ତଥା ପରିସ୍ଥିତି ଉପରେ। ଥରେ ଅସଫଳ ହେଲେ ବାରମ୍ବାର ପ୍ରୟାସ କରି, ଭୁଲ୍ ସୁଧାରି ପାରିଲେ ସଫଳ ହେବାର ଉଦାହରଣ ଅନେକ ଅଛି।

ବିଡମ୍ବନା ହେଉଛି ଯେ ଆଜିର ଶିକ୍ଷିତ ବର୍ଗର ଲୋକମାନେ ବି ସଫଳତା ଓ ଅସଫଳତା ପାଇଁ ନିଜକୁ କିମ୍ବା ନିଜର ପାରିପାର୍ଶ୍ୱିକ ଅବସ୍ଥାକୁ

ଅନୁଧ୍ୟାନ ନକରି ଭାଗ୍ୟକୁ ସୁଧାରିବା ପାଇଁ ତଥାକଥିତ ବାବା, ସାଧୁ, ତାନ୍ତ୍ରିକ, ଜ୍ୟୋତିଷମାନଙ୍କ ପାଖକୁ ଦୌଡିଯାଆନ୍ତି । କେହି ଚିନ୍ତା କରନ୍ତି ନାହିଁ ଯେ, 'ଭାଗ୍ୟ ଲିଖନ କେ କରିବ ଆନ ?' ଯଦି ସତ ହୋଇଥାଏ, ତେବେ କୌଣସି ସିଦ୍ଧ ପୁରୁଷର ଅଭିନୟ କରୁଥିବା ବାବା ଓ ତାନ୍ତ୍ରିକମାନେ କିପରି ଭାଗ୍ୟ ନିର୍ଦ୍ଧାରିତ ଫଳକୁ ପରିବର୍ତ୍ତନ କରିଦେଇ ପାରିବେ ? ସେମାନେ ଭାଗ୍ୟବାଦୀ ଲୋକମାନଙ୍କୁ ତନ୍ତ୍ର ସିଦ୍ଧ ମୁଦି, ତାବିଜ, ତେଉଁରିଆ, ଶ୍ରୀଯନ୍ତ୍ର, ବିଭିନ୍ନ ରଙ୍ଗର ପଥର (ରତ୍ନ) ଆଦି ବହୁମୂଲ୍ୟରେ ବିକ୍ରି କରି ଲାଭବାନ ହେଉଛନ୍ତି । ଉପରୋକ୍ତ ସମସ୍ତ ତନ୍ତ୍ରସିଦ୍ଧ ବସ୍ତୁ ବ୍ୟବହାର କରି ମଧ୍ୟ ଯଦି ଆଶାନୁରୂପ ଫଳ ପ୍ରାପ୍ତ ନହେଲା, ସେମାନେ 'ଚୋର ମା' ଦୁଆର କିଳି କାନ୍ଦିବା' ଭଳି କାହାକୁ କିଛି ନକହି ଚୁପ୍ ରହନ୍ତି । ଉପଭୋକ୍ତା ଅଧିକାର ସମ୍ପର୍କରେ ସଚେତନ ନାଗରିକମାନେ ଭୌତିକ ବସ୍ତୁର ଉତ୍ପାଦକ ଓ ବିକ୍ରେତାମାନଙ୍କୁ ଯେଉଁ ଅଭିଯୋଗ କରନ୍ତି, ତାନ୍ତ୍ରିକମାନଙ୍କ ପାଖରେ ସେଭଳି ଅଭିଯୋଗ କରିପାରନ୍ତି ନାହିଁ । କଲେ ବି କୌଣସି ଲାଭ ପାଇବେ ନାହିଁ । କାରଣ, ସେମାନେ ଲିଖିତ ଆକାରରେ ରସିଦ କିମ୍ବା ଗ୍ୟାରେଣ୍ଟି ପତ୍ର ଦିଅନ୍ତି ନାହିଁ । ସେମାନେ ମୁହଁରେ କହିଥିବା ସର୍ତ୍ତଗୁଡିକ ପାଳନ କରିବା ବି କୌଣସି ଗ୍ରାହକ ପକ୍ଷରେ ସମ୍ଭବ ନୁହେଁ । ତେଣୁ ଯଦି ଅସଫଳ ହୁଏ, ସବୁ ଦୋଷ ଗ୍ରାହକ ମୁଣ୍ଡରେ ଲଦି ଦିଆଯାଇପାରିବ ।

ତନ୍ତ୍ରସିଦ୍ଧ ମୁଦି କିମ୍ବା ତାବିଜ ଗ୍ରହଣ କରିଥିବା ବ୍ୟକ୍ତି ଜଣକ ନିଜର କଠୋର ପରିଶ୍ରମ ଓ ଅନୁକୂଳ ପରିସ୍ଥିତି ଯୋଗୁ ସଫଳତା ପ୍ରାପ୍ତ କଲେ ବି ସେ ନିଜକୁ ଧନ୍ୟବାଦ ନଦେଇ ମୁଦି କିମ୍ବା ତାବିଜର ଚମତ୍କାରୀ ଶକ୍ତିକୁ କାରଣ ବୋଲି ମାନିବ । କାକତାଳୀୟ ନ୍ୟାୟରେ କିଛି ବ୍ୟକ୍ତି କମ୍ ପରିଶ୍ରମରେ ଅଧିକ ଲାଭ ପାଇଗଲେ ମୁଦି କିମ୍ବା ତାବିଜର ଶକ୍ତି ଉପରେ ବିଶ୍ୱାସ ବଢିଜାଏ । ସେମାନେ ମୁକ୍ତ କଣ୍ଠରେ ମୁଦି ବିକ୍ରେତା ବାବାମାନଙ୍କର ପ୍ରଚାର କରନ୍ତି ।

ଆଜିକାଲି ଟିଭି ଚ୍ୟାନେଲରେ ସେଲିବ୍ରିଟି ପୁରୁଷ ଓ ମହିଳାମାନଙ୍କ ଦ୍ୱାରା ଶ୍ରୀଯନ୍ତ୍ର, ଭାଗ୍ୟଫଳକ, ଲକ୍ଷ୍ମୀ ମୁଦ୍ରା ଆଦି ଅନେକ ପ୍ରକାର ଚମତ୍କାରୀ ବସ୍ତୁ ସମ୍ପର୍କରେ କାଳ୍ପନିକ କାହାଣୀ ପ୍ରଦର୍ଶନ କରି କୋଟି କୋଟି ଟଙ୍କାର ବ୍ୟବସାୟ ଚାଲିଛି । ସେହିଭଳି ଚୀନର କୁଟୀର ଶିଳ୍ପରେ ତିଆରି ହେଉଥିବା ଫେଙ୍ଗସୁଇ ବସ୍ତୁଗୁଡିକ ଆମ ଦେଶରେ ଭାଗ୍ୟବାଦୀମାନଙ୍କ ଦ୍ୱାରା କିଣାଯାଉଛି । ଲାଫିଙ୍ଗ ବୁଦ୍ଧ, ୱିଣ୍ଡ ଚାଇମ୍, କ୍ରିଷ୍ଟଲ ବଲ, ଲୁକ୍‌ଫୁକ୍ ସାଉ ମୂର୍ତ୍ତି, ମୁନିଆ କ୍ରିଷ୍ଟାଲ ଗ୍ଲୋବ, ଲଭ୍ କାର୍ଡ, ଘଣ୍ଟିଯୁକ୍ତ ଭାଗ୍ୟଶାଳୀ ମୁଦ୍ରା, ଏନର୍ଜି ସଲ୍ଟ, ୱାଟର ଫାଉଣ୍ଟେନ, ଫେଙ୍ଗସୁଇ ମିରର୍, ଏଜୁକେସନ ଟାୱାର, ଡ୍ରାଗନ୍ ମାସ୍କ, ରେଶମ ସୂତାରେ ବନ୍ଧା ହୋଇଥିବା ତିନୋଟି ମୁଦ୍ରା, ମନିପ୍ରାଗ୍, ମେରୁଯନ୍ତ୍ର, ଲାଲ୍ ଲଫାପା, ଡ୍ରାଗନ ଟର୍ଟଲ, ସ୍ଲିପିଙ୍ଗ ବାଏ, ହେଲ୍‌ଥ ଫ୍ରଗ୍, ଲକି ବାମ୍ବୁ ଓ ହ୍ୱାଇଟ୍ ଷ୍ଟୋନ ଇତ୍ୟାଦି ଅନେକ ବସ୍ତୁ ବିକ୍ରି ହେଉଛି । ଦୁର୍ଭାଗ୍ୟକୁ ସୌଭାଗ୍ୟରେ ପରିଣତ କରିବା ପାଇଁ ଏହିସବୁ ବସ୍ତୁରେ ଅଦ୍ଭୁତ ଶକ୍ତି ରହିଥିବା ବିଶ୍ୱାସରେ ଲୋକମାନେ ପାଗଳ ହେଉଛନ୍ତି । ଭାଗ୍ୟ ଜାଲରୁ ନିଜକୁ ମୁକ୍ତ କରି, ନିଜର ପ୍ରତିଭା ଓ କର୍ମକୁଶଳତା ଉପରେ ଭରସା କରି, ଆତ୍ମବିଶ୍ୱାସର ବିକାଶ କଲେ, ମଣିଷ ନିଶ୍ଚୟ ସଫଳତା ପ୍ରାପ୍ତି କରିପାରିବ ବୋଲି ବିଶ୍ୱାସ ।

*********

ଗଂଜାମ ଜିଲ୍ଲାର ଏକ ଛୋଟ ଗ୍ରାମ ପାଟରା ପଲ୍ଲୀରେ ୧୯୫୧ ମସିହାରେ ଜନ୍ମ ଗ୍ରହଣ କରିଥିବା ବାଲ୍ମୀକି ନାୟକ ଜଣେ ହେତୁବାଦୀ ଭାବେ ପରିଚିତ । ତାଙ୍କର ପ୍ରାୟ ୨୫୦ରୁ ଊର୍ଦ୍ଧ୍ୱ ହେତୁବାଦୀ ପ୍ରବନ୍ଧ ବିଭିନ୍ନ ଓଡ଼ିଆ ଓ ହିନ୍ଦୀ ପତ୍ରିକାରେ ପ୍ରକାଶିତ ଓ ପ୍ରଶଂସିତ । ତାଙ୍କର ୫ ଗୋଟି ପ୍ରବନ୍ଧ ସଂକଳନ "ମୁକ୍ତ ମନର ବିଚାର" ଚମତ୍କାରର ରହସ୍ୟ" ତର୍କର ଊର୍ଦ୍ଧ୍ୱରେ କିଏ ? "ହେତୁବାଦର ଆବଶ୍ୟକତା" ଓ "ଅଦ୍ଭୁତ ଜନ ବିଶ୍ୱାସ" ପ୍ରକାଶ ପାଇ ଓଡ଼ିଆ ସୁଧୀ ପାଠକମାନଙ୍କର ସ୍ୱୀକୃତି ପ୍ରାପ୍ତ କରିଛି । ତାଙ୍କର ତିନି ଗୋଟି ପୁସ୍ତକର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇବା ପରେ ଏବଂ ଅଧିକାଂଶ ଜିଲ୍ଲାରୁ ପାଠକମାନଙ୍କର ଏହି ଲେଖକଙ୍କର ହେତୁବାଦୀ ସାହିତ୍ୟ ପୁସ୍ତକ ପ୍ରତି ବୃଦ୍ଧି ପାଉଥିବା ଆଗ୍ରହ ଦେଖି ଆମେ ଆଶା କରୁଛୁ ଖୁବଶୀଘ୍ର ଆମ ସମାଜରେ ଏକ କ୍ରାନ୍ତିକାରୀ ପରିବର୍ତ୍ତନ ହେବାକୁ ଯାଉଛି । ଏହି ଷଷ୍ଠ ପ୍ରବନ୍ଧ ସଙ୍କଳନରେ ସ୍ଥାନିତ ବିଷୟବସ୍ତୁ ଗୁଡିକ ପାଠକମାନଙ୍କ ମନର ଅହେତୁବାଦୀ ବିଶ୍ୱାସକୁ ଦୋହଲେଇ ଦେଇ ପାରିବ ବୋଲି ଆମର ବିଶ୍ୱାସ । ଆଧୁନିକ ସଭ୍ୟ ସମାଜରେ ବ୍ୟାପ୍ତ ରୂଢିବାଦୀ ପରଂପରା, ବିଭିନ୍ନ ପ୍ରକାର କୁସଂସ୍କାର ଓ ଧାର୍ମିକ ବ୍ୟବସାୟକୁ ବନ୍ଦ କରିବା ପାଇଁ ଏହି ପ୍ରବନ୍ଧ ଗୁଡିକ ସାହାଯ୍ୟ କରିବ ବୋଲି ଆମେ ଆଶା ପୋଷଣ କରୁଛୁ ।

ପ୍ରକାଶିକା